# ଶିଶୁଗଳ୍ପ ସଂକଳନ

ସଂକଳକ :

ଓଡ଼ିଶା ଶିଶୁ ସାହିତ୍ୟ ଏକାଡେମୀ,
ଭୁବନେଶ୍ୱର



ଓଡ଼ିଶା ବୁକ୍ ଷ୍ଟୋର

# ଶିଶୁଗଳ୍ପ ସଂକଳନ

ସଂକଳକ :
**ଓଡ଼ିଶା ଶିଶୁ ସାହିତ୍ୟ ଏକାଡେମୀ**
ଭୁବନେଶ୍ୱର

ପ୍ରକାଶକ :
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ : ୧୯୮୫

ମୁଦ୍ରଣ :
ସଂସାର ପ୍ରେସ, କଟକ-୯

ମୂଲ୍ୟ : ଏକୋଇଶ ଟଙ୍କା
ଶୋଭନ : ପଚିଶ ଟଙ୍କା ମାତ୍ର

SISUGALPA SANKALANA

*Sankalana :*
ORISSA SAHITYA AKADEMI
Bhubaneswar

*Publisher :*
Sri Govind Charan Patra

ORISSA BOOK STORE
Binodbihari, Cuttack-753002

*First Edition : 1985*

*Printer :*
Sansar Press, Cuttack-9

*Price : Rs. 25-00*

# ସଂକଳନ ସଂପର୍କରେ

ଓଡ଼ିଶା ଶିଶୁ ସାହିତ୍ୟ ଏକାଡେମୀ ଓଡ଼ିଆ ଶିଶୁ ସାହିତ୍ୟର ବିକାଶ ପାଇଁ ପ୍ରତିଷ୍ଠିତ । ପ୍ରକାଶନ, ଗବେଷଣା ଓ ଆଲୋଚନା ମାଧ୍ୟମରେ ଏହି ଲକ୍ଷ୍ୟ ସାଧନରେ ସେ ବ୍ରତୀ, କିନ୍ତୁ ଏକାଡେମୀର ଆର୍ଥିକ ସ୍ୱଚ୍ଛଳତା ନ ଥିବାରୁ ଏହି କାର୍ଯ୍ୟ ଆଶାନୁରୂପ ଆଗେଇ ପାରୁନାହିଁ । ସେଥିପାଇଁ ଏକାଡେମୀର କର୍ମକର୍ତ୍ତାଗଣ ଚିନ୍ତିତ ।

ପ୍ରାୟ ବର୍ଷକ ତଳେ ଏକାଡେମୀର କାର୍ଯ୍ୟନିର୍ବାହୀ ସମିତି ଦୁଇଟି ପୁସ୍ତକ ପ୍ରକାଶନର ପ୍ରସ୍ତାବ ନେଇଥିଲେ । ସେଥିରୁ ଗୋଟିଏ ହେଲା— ୯ ବର୍ଷରୁ ୧୫ ବର୍ଷ ବୟସ୍କ କିଶୋରମାନଙ୍କ ଉପଯୋଗୀ ଗଳ୍ପଗୁଡ଼ିକର ସଂକଳନ । ଶିଶୁ ସାହିତ୍ୟପ୍ରେମୀ ତଥା କିଶୋର ପାଠକମାନଙ୍କ ହାତରେ ଏକ ସୁନିର୍ବାଚିତ ଗଳ୍ପ-ପୁସ୍ତକ ଦେବା ଏହାର ମୁଖ୍ୟ ଉଦ୍ଦେଶ୍ୟ ।

ସମିତିର ସଭ୍ୟ ଶ୍ରୀ ବୀରେନ୍ଦ୍ରକୁମାର ସାମନ୍ତରାୟଙ୍କୁ ଏ ସଂପର୍କରେ ସଭ୍ୟମାନଙ୍କ ସହିତ ପରାମର୍ଶ କରି ଗଳ୍ପ ସଂଗ୍ରହ କରିବାକୁ ଦାୟିତ୍ୱ ଦିଆଯାଇଥିଲା । ତାଙ୍କର ଆନ୍ତରିକ ଉଦ୍ୟମ ଫଳରେ ଯେଉଁ ଗଳ୍ପଗୁଡ଼ିକ ସଂଗୃହୀତ ହୋଇପାରିଲା, ସେଗୁଡ଼ିକରୁ ଲେଖକଙ୍କର ନାମ ଓ ଠିକଣା ଉହ୍ୟ ରଖାଯାଇ ଲେଖାଗୁଡ଼ିକ ରାଜ୍ୟର ପ୍ରସିଦ୍ଧ ଗାଳ୍ପିକ ତଥା ଶିଶୁ ସାହିତ୍ୟିକ ଶ୍ରୀ ଶାନ୍ତନୁକୁମାର ଆଚାର୍ଯ୍ୟଙ୍କୁ ସମୀକ୍ଷା କରିବାକୁ ଦିଆ-ଯାଇଥିଲା । ସେ ମହାଶୟଙ୍କର ସୁଚିନ୍ତିତ ପରାମର୍ଶକ୍ରମେ କାର୍ଯ୍ୟନିର୍ବାହୀ ସମିତି କେତେଗୁଡ଼ିଏ ଗଳ୍ପ ନିର୍ବାଚନ କରିଥିଲେ ।

ସଂକଳନକୁ ସମୃଦ୍ଧ ଓ ସାର୍ଥକ କରିବା ପାଇଁ କାର୍ଯ୍ୟନିର୍ବାହୀ ସମିତି ଲବ୍‌ଧପ୍ରତିଷ୍ଠ ଶିଶୁ ସାହିତ୍ୟିକମାନଙ୍କଠାରୁ ଗଳ୍ପ ସଂଗ୍ରହ କରିବା ପାଇଁ ସଭାପତି, ଉପସଭାପତି ଶ୍ରୀ ନିକୁଞ୍ଜ କିଶୋର କାନୁନ୍‌ଗୋ ଓ ସାଧାରଣ ସଂପାଦକ ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସଙ୍କୁ ଦାୟିତ୍ୱ ଦେଇଥିଲେ । ସେମାନଙ୍କ ପ୍ରଚେଷ୍ଟାରେ ଆଉ କେତୋଟି ଗଳ୍ପ ସଂଗୃହୀତ ହେଲା ।

ସଙ୍କଳନର ପ୍ରକାଶନ ଏକାଡେମୀ ପକ୍ଷରେ ଏକ ସମସ୍ୟା ହୋଇଥିବାରୁ କାର୍ଯ୍ୟନିର୍ବାହୀ ସମିତିର ସଭ୍ୟ ଓ ପ୍ରତିଷ୍ଠିତ ପ୍ରକାଶକ ଶ୍ରୀ ଗୋବିନ୍ଦ ଚରଣ ପାଣି ଏହି ଦାୟିତ୍ୱ ଅକୁଣ୍ଠିତ ଚିତ୍ତରେ ଗ୍ରହଣ କରିଛନ୍ତି ।

ବୟସକ୍ରମରେ ଗଳ୍ପଗୁଡ଼ିକର ସଜ୍ଜୀକରଣ ହୋଇଛି । ଏହି କାର୍ଯ୍ୟରେ ଓ ସମ୍ପାଦନାରେ ବନ୍ଧୁ ନିକୁଞ୍ଜବାବୁଙ୍କ ସାହାଯ୍ୟ ସହଯୋଗ ଅତ୍ୟନ୍ତ ସ୍ମରଣୀୟ । ଗଳ୍ପଗୁଡ଼ିକୁ ସଚିତ୍ର କରିବାରେ କଳାକାର ଶ୍ରୀ ସୁନାମଣି ସାମଲ ଦାୟିତ୍ୱ ଗ୍ରହଣ କରିଥିଲେ ।

ଏହି ଅବସରରେ ଗଳ୍ପ ସଙ୍କଳନର ଅବଦାନରେ ପ୍ରବୀଣ ଓ ନବୀନ ଶିଶୁ ସାହିତ୍ୟିକ, ସମୀକ୍ଷାରେ ଶାନ୍ତନୁବାବୁ, ସଂଗ୍ରହରେ ବୀରେନ୍ଦ୍ରବାବୁ, ସମ୍ପାଦନାରେ ନିକୁଞ୍ଜବାବୁ ଓ ନରେନ୍ଦ୍ରବାବୁ, ପ୍ରକାଶନରେ ଗୋବିନ୍ଦବାବୁ, ଅଙ୍ଗସଜ୍ଜାରେ ସୁନାମଣିବାବୁ ଏବଂ ସାମଗ୍ରିକ ପରାମର୍ଶ ଦାନରେ କାର୍ଯ୍ୟନିର୍ବାହୀ ସମିତିର ସଭ୍ୟବୃନ୍ଦଙ୍କୁ ମୁଁ ନିଜ ପକ୍ଷରୁ ଓ ଏକାଡେମୀ ତରଫରୁ କୃତଜ୍ଞତା ଜଣାଉଛି ।

ଆଶା, ପାଠକ ତଥା ସାହିତ୍ୟିକ ବନ୍ଧୁଗଣଙ୍କ ନିକଟରେ ଏହି ସଙ୍କଳନଟି ସମାଦୃତ ହେବ ।

ଜଗନ୍ନାଥ ମହାନ୍ତି
ସଭାପତି,
ଓଡ଼ିଶା ଶିଶୁ ସାହିତ୍ୟ ଏକାଡେମୀ

ଭୁବନେଶ୍ୱର
ତା ୨୯ । ୯ । ୮୫

# ସୂଚୀ

# ଆମ ଶିଶୁ ମେଳା

ଉଦୟନାଥ ଷଡ଼ଙ୍ଗୀ



ଆନ୍ତର୍ଜାତିକ ଶିଶୁ ବର୍ଷ ।

ପୃଥିବୀର ସବୁ ଦେଶର ପିଲାମାନଙ୍କ ଭିତରେ ଆନନ୍ଦ କୋଳାହଳ । ସ୍କୁଲମାନଙ୍କରେ ଶିଶୁ ମେଳା, ସାଂସ୍କୃତିକ ସଭା, କବିତା, ସଙ୍ଗୀତ-ବକ୍ତୃତା ପ୍ରତିଯୋଗିତା, ଭୋଜି, ଥିଏଟର ପ୍ରଭୃତି ଉତ୍ସବ ଲାଗିରହିଛି । ଖବର-କାଗଜମାନଙ୍କରେ ତାର ବିବରଣୀ ପ୍ରକାଶ ପାଉଛି । ଫଟୋ ଛପାଯାଉଛି । ତାକୁ ପଢ଼ି, ଦେଖି ଆମ ମନ ଉଲ୍ଲସି ଉଠିଲା ।

ସତ୍ୟସୁନ୍ଦରପୁର—ନାମଟି ସୁନ୍ଦର । କିନ୍ତୁ ଗାଁ ଲୋକେ ଅତି ଗରିବ । ତଥାପି ସମସ୍ତେ ଲାଗିପଡ଼ି ମାଇନର ସ୍କୁଲଟିଏ ବସାଇଛନ୍ତି । ପାଖ ଆଖ ଗ୍ରାମରୁ ବହୁତ ପିଲା ଆସି ସେଠାରେ ପଢ଼ନ୍ତି, ବର୍ଷକୁ ବର୍ଷ ପରୀକ୍ଷା ଦିଅନ୍ତି । ଆମେ ସେଇ ସ୍କୁଲର ଉପର ଶ୍ରେଣୀର ଛାତ୍ର ।

ମନ ହାଇଁପାଇଁ ହେଲ । ପିଲମାନେ ବସି ବିଗ୍ୱର କଲୁ, ଆମ ସ୍କୁଲରେ ଶିଶୁ ମେଳା ଉତ୍ସବ କରିବା । ନଭେମ୍ବର ଚଉଦ ତାରିଖ—ଶିଶୁ ଦିବସ । ସେହି ଦିନ ଉତ୍ସବ କଲେ ଭଲ ହେବ !

ପ୍ରଧାନ ଶିକ୍ଷକଙ୍କ ପାଖକୁ ଗଲୁ ଅନୁମତି ମାଗିବାକୁ । ସେ ଖୁସି ହେଲେ, ସବୁ ପ୍ରକାର ସାହାଯ୍ୟ କରିବେ ବୋଲି କହିଲେ ।

ବିଗ୍ୱରରେ ଠିକ୍ ହେଲ, ପିଲମାନେ ମିଶି ଥିଏଟର କରିବେ ରାତିରେ; ଦିନରେ ସଙ୍ଗୀତ, ଆବୃତ୍ତି, ବକ୍ତୃତା, ଖେଳ ପ୍ରତିଯୋଗିତାମାନ କରାଯିବ । ଯେ ପ୍ରଥମ, ଦ୍ୱିତୀୟ, ତୃତୀୟ ହେବେ, ସେମାନଙ୍କୁ ପୁରସ୍କାର ଦିଆଯିବ । ସଂଧ୍ୟା ସମୟରେ ହେବ ସଭା । ତାହା ପରେ ଭୋଜି ।

ସହରରୁ ମନ୍ତ୍ରୀଙ୍କୁ ନିମନ୍ତ୍ରଣ କରି ଅଣାଯିବ ସଭାପତି ହେବା ପାଇଁ । ସେ ବକ୍ତୃତା ଦେବେ, ପୁରସ୍କାର ବାଣ୍ଟିବେ । ଖବର କାଗଜରେ ଆମ ନାମ, ସ୍କୁଲର ପ୍ରଶଂସା ପ୍ରକାଶ ପାଇବ । ଅନ୍ୟ ଆଡ଼ର ପିଲମାନେ ପଢ଼ି ଖୁସି ହେବେ । ସତ୍ୟସୁନ୍ଦରପୁର ସ୍କୁଲର ଖ୍ୟାତି ବଢ଼ିଯିବ ।

ମଦନ ଆମ ମନିଟର । ସେ ବଡ଼ ପେଟୁ । ସବୁବେଳେ ତାର ଖାଇବା ଚିନ୍ତା ।

ମଦନ ପ୍ରସ୍ତାବ ଦେଲ, "ରାତି ଭୋଜିଟା ଯେପରି ଖୁବ୍ ବଢ଼ିଆ ହେବ । ତା ନ ହେଲେ ଶିଶୁମେଳା ଆଉ କଅଣ ? ମିଠା କାନିକା ତ ହେବ, ତା ସାଙ୍ଗକୁ ପାୟସ୍, ଖଟା, ଡାଲି, ତରକାରି—ଏହାର ବ୍ୟବସ୍ଥା ନିଶ୍ଚୟ କରିବାକୁ ହେବ ।"

ପଦନର ଜିଦ୍—ଏ ଅଞ୍ଚଳକୁ ନୂଆ ହୋଇ ଇଲେକ୍‌ଟ୍ରିକ ଆଲୁଅ ଆସିଛି । ସ୍କୁଲ ଘର, ହତା ଚାରିପାଖ ଏବଂ ରାସ୍ତା ଦୁଇ କଡ଼ରେ ଇଲେକ୍‌ଟ୍ରିକ ଆଲୁଅ ଝଞ୍ଜାଯିବ । ଯାହା ଖର୍ଚ୍ଚ ହେଉ ପଛକେ, ନାଲି, ନେଳି, ବାଇଗଣୀ ଆଲୁଅମାନ ଦୁଳିବ । ବଡ଼ ବଡ଼ ଲମ୍ବା ବଲବ୍‌ମାନ ଲଗାଯିବ । ସେ ସବୁ ଜଳିଲେ ଭାରି ସୁନ୍ଦର ଦିଶିବ, ଲୋକେ ଦେଖି ଖୁସି ହେବେ, ସାବାସ୍ ସାବାସ୍ କହିବେ ।

ଗୋପାଳର ମତ, ଜାକ୍‌ଜମକରେ ଥିଏଟର କରିବାକୁ ହେବ । ସେଥିପାଇଁ ଅଧିକା ଟଙ୍କାର ବ୍ୟବସ୍ଥା ହେବା ଦରକାର । ବହୁ ଦୂରଦୂରାନ୍ତରୁ

ଲୋକେ ଆସିବେ, ଥିଏଟର ଦେଖି ମୁଗ୍ଧ ହେବେ । ଯେତେବେଳେ ଭୀମ ଦୁଃଶାସନଙ୍କ ଗଦାଯୁଦ୍ଧ ଦୃଶ୍ୟ ଦେଖାଯିବ ନା, ସମସ୍ତେ କୁରୁଳି ଉଠି ହାତ ତାଳି ମାରିବେ ।

ଗୋପାଳର ନାଟଡାମସାରେ ଟିକିଏ ଅଧିକ ଝୁଙ୍କ । ଭଲ ଗୀତ ବୋଲେ । ଅଭିନୟ ବି କରେ । କେତେଥର ପୁରସ୍କାର ବିତରଣ ଉତ୍ସବରେ ଏଥିପାଇଁ ପୁରସ୍କାର ପାଇଛି । ସଭାପତି ହସି ହସି ପ୍ରଶଂସା କରିଛନ୍ତି ।

ପ୍ରଧାନ ଶିକ୍ଷକ ମହାଶୟ ସମସ୍ତ ପରିକଳ୍ପନା ଶୁଣିଲେ । ମୁହଁ ଶୁଖାଇ କହିଲେ, "ଏତେ ଟଙ୍କା ଆସିବ କୁଆଡୁ ? ଏଇଟି ତ ଗରିବ ଅନୁଷ୍ଠାନ । ସ୍କୁଲ ପାଣ୍ଠିରୁ ପଇସା ଦେଇ ହେବ ନାହିଁ ।"

ପିଲାମାନଙ୍କ ମନ ଟିକିଏ ଦବିଗଲା । କିନ୍ତୁ ସେମାନେ ହତାଶ ହୋଇପଡ଼ିଲେ ନାହିଁ ।

"ସାର୍, ଆମେ ସମସ୍ତେ କିଛି କିଛି ଚାନ୍ଦା ଦେବୁ । ଗାଁ ଗାଁ ବୁଲି ଅର୍ଥ ସଂଗ୍ରହ କରିବୁ । ଉତ୍ସବଟା ଯେ କୌଣସିମତେ ଜାକ୍‌ଜମକରେ କରିବାକୁ ହେବ । ଯେତେ କଷ୍ଟ ହେଉ ପଛକେ, ଆମେ ଲାଗି ପଡ଼ିବୁ । ଆମ ସ୍କୁଲର ମର୍ଯ୍ୟାଦା ବଢ଼ିବ ।"—ସବୁ ପିଲା ଏକ ସ୍ୱରରେ କହି ଉଠିଲେ ।

ପ୍ରଧାନ ଶିକ୍ଷକ ଉତ୍ସାହିତ ହେଲେ । ପିଲାମାନଙ୍କୁ ଉତ୍ସାହ ବି ଦେଲେ, "ବେଶ୍ ଲାଗିଯାଅ । ମୁଁ ପଚାଶ ଟଙ୍କା ଚାନ୍ଦା ଦେଉଛି । ଶିକ୍ଷକମାନଙ୍କୁ କହିବି, ସେମାନେ ବି ଦିନଦିନକର ବେତନ ଦେବେ । ଏଣିକି ତୁମମାନଙ୍କ ଉପରେ ସମସ୍ତ ନିର୍ଭର କରେ ।"

ପିଲାମାନେ ଆନନ୍ଦରେ ଗାଁ ଗାଁ ଖେଦିଗଲେ । ଘର ଘର ବୁଲି ଚାନ୍ଦା ମାଗିଲେ ।

ଛୋଟ ଛୋଟ ପିଲାଙ୍କ ଅଳି କିଏ ବା ନ ରଖିବ ? ଶକ୍ତି ଥାଉ ନ ଥାଉ, ଆଗ୍ରହରେ ଲୋକେ ଚାନ୍ଦା ଦେଲେ । କାହାଠାରୁ ଟଙ୍କାଏ ଦୁଇଟଙ୍କା ମିଳିଲା ତ କିଏ ଦଶଟଙ୍କା ଦେଇଦେଲା । କେହି କେହି ଚାଉଳ, ଡାଲି ପନିପରିବା ମଧ୍ୟ ଦେଲେ ।

କେବଳ ଦେଲେ ନାହିଁ ଗ୍ରାମର ସରପଞ୍ଚ ନଟବାବୁ । ସେ ସମସ୍ତଙ୍କ ଅପେକ୍ଷା ଧନୀ । ପୁଣି ସ୍କୁଲ ସେକ୍ରେଟାରୀ । ପିଲାଏ ଭାବିଥିଲେ, ତାଙ୍କଠାରୁ

ଗୋଟାଏ ମୋଟା ପରିମାଣ ଚାନ୍ଦା ମିଳିବ । ମାତ୍ର ସେମାନେ ନିରାଶ ହେଲେ । ନଟବାବୁ ଶୁଣାଇଦେଲେ, "ମୁଁ ଟଙ୍କାଟିଏ ବି ଦେବି ନାହିଁ ।"

"ବଡ଼ କୃପଣ, କଞ୍ଜୁସ୍ । ନାଁ ଧରିଲେ ଖାଇବାକୁ ମିଳିବ ନାହିଁ" —ପିଲାମାନେ ମନେ ମନେ ଏହି ମନ୍ତବ୍ୟ ଦେଲେ ।

ଯାହା ହେଉ, ଚାନ୍ଦା ବେଶ୍ ଭଲରୂପେ ଆଦାୟ ହେଲା । ଏତେ ଟଙ୍କା ଉଠିବ ବୋଲି ପିଲାଏ ଆଶା କରି ନ ଥିଲେ । ପ୍ରଧାନ ଶିକ୍ଷକ ଖୁସି ହୋଇଗଲେ । ଉତ୍ସବରେ ସଭାପତିତ୍ୱ କରିବାପାଇଁ ମନ୍ତ୍ରୀଙ୍କୁ ଅନୁରୋଧ କଲେ । ଜିଲାର ବଡ଼ ହାକିମ, ଉଚ୍ଚ ଅଫିସର ଓ ପାଖଆଖ ଅଞ୍ଚଳର ବିଶିଷ୍ଟ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରାଗଲା ।

ମଦନ କହିଲା, "ଯାହା କରୁଛ କର ପଛକେ, ଭୋଜଟା ଯେପରି ଅତି ବଢ଼ିଆ ହେବ । କେବଳ ପାୟସ ପାଇଁ ପଚିଶ ଟଙ୍କା ଲାଗିବ । ଭୋଜି ଲାଗି ବେଶୀ ଟଙ୍କାର ବ୍ୟବସ୍ଥା କର ।"

ଗୋପାଳ ଚେଚାଁଇ ଉଠିଲା । "ଥିଏଟରର ବେଶ ପୋଷାକ ପାଇଁ ମୋର ଅଧିକ ଟଙ୍କା ଦରକାର । ସହରରୁ ସିନ୍ ଆସିବ, ସାଜ ଆସିବ, ବାଜା ଆସିବ, ପେଣ୍ଟିଂ କରିବାକୁ ଲୋକ ଆସିବେ । ଭୋଜି ତ ଖାଇଦେଲେ ସରିଯିବ । ଥିଏଟର ଭଲ ହେଲେ ଲୋକ ବହୁଦିନ ଯାଏ ମନେ ରଖିଥିବେ, ପ୍ରଶଂସା କରୁଥିବେ ।"

ପଦନ ବା ପଛାଇବ କାହିଁକି ? ସେ ଦୁଇହାତ ହଲାଇ କହିଲା, "ରଖ ତୁମ ଭୋଜ, ଥିଏଟର । ଇଲେକ୍‌ଟ୍ରିକ ଆଲୁଅର ଜାକ୍‌ଜମକ ନ ହେଲେ ନ ଚଳେ । ଶିଶୁମେଳାର ଶୋଭା ଆଉ ମର୍ଯ୍ୟାଦା ସେ ବହୁତ ବଢ଼ାଇଦେବ । ଅନେକ ଦିନ ଯାଏ ଲୋକେ ଝୁରି ହେଉଥିବେ । ସେ ଦିଗରେ ଟିକିଏ ଅଧିକ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବ ।"

ଯା ହେଉ, ସମସ୍ତଙ୍କୁ ତ ଖୁସି କରିବାକୁ ପଡ଼ିବ ।

ପିଲାମାନେ ଜୋରସୋରରେ ଆୟୋଜନରେ ଲାଗିଗଲେ ।

ନଭେମ୍ବର ମାସ ଦଶ ତାରିଖ । ଶିଶୁ ଦିବସ ଆଉ ମାତ୍ର ଚାରି ଦିନ ଅଛି ।

ଥିଏଟରର ଶହର୍‌ସାଲ ପୂରା ଦମରେ ଚାଲିଛି, ବେଶପୋଷାକ, ବାଜା ପାଇଁ ବରାଦ ଦିଆ ସରିଲାଣି । ଇଲେକ୍‌ଟ୍ରିକ ବଲ୍‌ବ ଖଞ୍ଜା ଯିବାର ଖୁଣ୍ଟି ପୋତାଗଲାଣି । ରନ୍ଧାବଢ଼ା ଲାଗି ହାଣ୍ଡି, ହାଣ୍ଡି ସଂଗ୍ରହ କରି ଅଣାଗଲାଣି ।

ପିଲାମାନେ ବାହାରରୁ ଦୋକାନ ସଉଦା କିଣିବାକୁ, ଜିନିଷପତ୍ର ଲଦି ଆଣିବାକୁ ଗୋଟିଏ ରିକ୍‌ସା ଦରକାର ।

ରିକ୍‌ସା ମିଳିଗଲା । ଚାଳକଟି ଆମରି ବୟସର । ଜରରେ ଥରୁଥାଏ । ଭଲରୂପେ କଥା କହିପାରୁ ନ ଥାଏ । ତଥାପି ସେ ଆମ ସାଙ୍ଗରେ ହାଟକୁ ଚାଲିଲା । ମଜୁରି ପାଇବ ଦୁଇ ଟଙ୍କା ।

ବାଟରେ ଗୋପାଳ ପଚାରିଲା, "ତୁ ତ ଜରରେ ଥରୁଛୁ । ଏତେ ବାଟ ଯିବୁ କେମିତି ? ବୋଝ ଆଣିପାରିବୁ ତ ?"

"ବାବୁ, ବାପା ଘରେ ବାଧିକା ପଡ଼ିଛି । ଚାରିଦିନ ହେଲା ସେ ରିକ୍‌ସା ନ ଟାଣିବାରୁ ଆମେ ଖାଇବାକୁ ପାଉନାହୁଁ । ସେଥିପାଇଁ ମୁଁ ଆଜି ରିକ୍‌ସା ବାହାର କରିଛି । ଦୁଇଟି ଟଙ୍କା ପାଇଲେ ଚାଉଳ କିଣିବି । ବାପା ପାଇଁ ଔଷଧ ବି ନେବି ।" ପିଲାଟି ରହିରହି ଉତ୍ତର ଦେଲା ।

ବାଟରେ ହରି ଘର । ସେ ଆମ ଶ୍ରେଣୀର ଜଣେ ଭଲ ଛାତ୍ର । ସବୁବେଳେ ହସୁଥାଏ, ସମସ୍ତଙ୍କୁ ହସାଉଥାଏ । ଦଶ ଦିନ ହେଲା ସ୍କୁଲକୁ ଯାଉନାହିଁ । କଅଣ ଦେହ ଖରାପ ହେଉଛି ବୋଲି ଶୁଣିଥିଲୁ । ତା କଥା ବୁଝିବାପାଇଁ ତା ଘର ଭିତରକୁ ପଶିଗଲୁ ।

ହରି ବିଛଣାରେ ଶୋଇରହିଛି । ତାକୁ ଚିହ୍ନି ହେଲା ନାହିଁ, କଙ୍କାଳସାର ଦେହ । ମୁହଁର ହସ ଲିଭିଯାଇଛି । ସାନଭଉଣୀଟି ପାଖରେ ବସି ଆଉଁସି ଦେଉଛି ।

ଆମକୁ ଚାହିଁ ହରିର ଦୁଇ ଆଖିରୁ ଲୁହ ଧାର ବୋହି ପଡ଼ିଲା ।

ତା ବାପା ଆସି କହିଲେ, "ତାକୁ ଟାଇଫଏଡ଼ ଜର । ତାତି ଆଦୌ କମୁନାହିଁ । ପାଖରେ ପଇସାଟିଏ ନାହିଁ ଔଷଧ କିଣିବାକୁ । ଡାକ୍ତରଙ୍କ ବରାଦ ଦୁଧ, ଅଣ୍ଡା ଦିଅ । ଔଷଧ ବନ୍ଦ କର ନାହିଁ । ମୁଁ କରୁପାପୁ ।"

ମଦନ ଥରେ ହରିଆଡ଼କୁ ଚାହିଁଲା, ପୁଣି ତା ବାପାଙ୍କ ମୁହଁକୁ । କଅଣ ଭାବିଲା କେଜାଣି, ପକେଟରୁ ଦୁଇଖଣ୍ଡି ଦଶଟଙ୍କିଆ ନୋଟ ବାହାର

କରି ବୁଢ଼ାଙ୍କ ଆଡ଼କୁ ବଢ଼ାଇଦେଲା । ସେ ପ୍ରଥମେ ନେଉ ନ ଥିଲେ । ମଦନର ଜିଗର ଦେଖି ହାତରେ ଧଇଲେ । ମୁହଁରେ କୁଣ୍ଠିତ ଭାବ ।

ଆମେ ବିଷଣ୍ଣ ମନରେ ସେଠାରୁ ଚାଲିଆସିଲୁ । ମୁଁ ବାଟରେ ପଚାରିଲି, "ଏତେ ଟଙ୍କା ଯେ ଦେଇଦେଲୁ, ସାର୍ ଗାଳି ଦେବେ ନାହିଁ ? ଭୋଜି ପଇସା କମିଗଲା । ପୂରଣ ହେବ କେମିତି ?"

ମଦନ ଉତ୍ତର ଦେଲା, "ସାର୍ ଯଦି ଗାଳି ଦିଅନ୍ତି, ମୁଁ ତାହା ସହିଯିବି । ଭାବୁଛି, ଭୋଜିରୁ ପାୟସଟା ବାଦ୍ ଦେଇଦେବା ।"

ଅଳ୍ପଦୂରରେ ନେଉଳପୁର ହରିଜନ ବସ୍ତି । ମାସକ ତଳେ ସେ ଗ୍ରାମରେ ନିଆଁ ଲାଗି ସମସ୍ତଙ୍କ ଘର ପୋଡ଼ିଯାଇଛି । ପିଲା, ବୁଢ଼ା ପଦାରେ



ପଡ଼ି କୁଡ଼ିଆ କରି ରହିଛନ୍ତି । ପିଲାଗୁଡ଼ିକ ଲଙ୍ଗଳା ମୁକୁଳା ଧୂଳିଧୂସର । ଅଭୁକ୍ତ ପରି ଏଠି ସେଠି ବୁଲୁଛନ୍ତି ।

ସମସ୍ତେ ମୁହୂର୍ତ୍ତେ ସେଠାରେ ଠିଆ ହୋଇଗଲୁ ।

ଗୋପାଳ ମଦନକୁ ଚାହିଁ କହିଲା, "ଆମ ଥିଏଟର ବନ୍ଦ କରିଦେବା । ମୋ ମନ ହେଉଛି, ସେହି ଟଙ୍କାଟା ଏମାନଙ୍କୁ ଦାନ କରିଦେଲେ ଏମାନେ ଟିକିଏ ଆଶ୍ରା ପାଆନ୍ତେ ।"

"ନାହିଁ, ନାହିଁ । ଥିଏଟର ହେଉ । ଆମ ଇଲେକ୍‌ଟ୍ରିକ ସଜାସଜି ବନ୍ଦ କରିଦେବା । ଦୁଇ ତିନିଟା ପେଟ୍ରୋମାକ୍ସ ଆଲୁଅ ହେଲେ ସୁନ୍ଦର ରୂପେ କାମ ଚଳିଯିବ ।"—ମଦନ ବଳପଡ଼ି କହି ପକାଇଲା ।

ଆମେ ଆଉ ଆଗକୁ ମୁହାଁଇଲୁ ନାହିଁ । ସେତେବେଳକୁ ଅନ୍ଧାର ହୋଇଆସିଥିଲା । ରିକ୍‌ସାଚାଳକ ପିଲାଟିକୁ ସେହିଠାରୁ ବିଦା କରିଦେଲୁ । ତା ଭଡ଼ା ଦୁଇଟଙ୍କା ଜାଗାରେ ଖଣ୍ଡିଏ ପାଞ୍ଚଟଙ୍କିଆ ନୋଟ ମଦନ ବଢ଼ାଇଦେଲା । ତାକୁ କହିଲା, "କାଲି ସକାଳେ ସ୍କୁଲକୁ ଯିବୁ ।"

ଆମେ ଡରି ଡରି ସ୍କୁଲକୁ ଫେରିଲୁ ।

ଏକା ପ୍ରଧାନ ଶିକ୍ଷକ ନୁହନ୍ତି, ସବୁ ସାର୍ ଆମ କଥା ଶୁଣିଲେ । କାହାରି ମୁହଁରେ ବିରକ୍ତି ବା କ୍ରୋଧର ଚିହ୍ନ ଦେଖାଗଲା ନାହିଁ । ଆମ ମନରୁ ଭୟ ଟିକିଏ କମିଗଲା ।

ଚଉଦ ତାରିଖରେ ଶିଶୁମେଳା ହେଲା । ମନ୍ତ୍ରୀ ଆସିଲେ; ସଭାପତି ହେଲେ । ପ୍ରତିଯୋଗିତାରେ ପ୍ରଥମ, ଦ୍ୱିତୀୟ, ତୃତୀୟ ହୋଇଥିବା ପିଲାଙ୍କୁ ପୁରସ୍କାର ବାଣ୍ଟିଲେ ।

ସହରରୁ ବଡ଼ ବଡ଼ ହାକିମ ଆସିଥିଲେ । ବହୁ ଗଣ୍ୟମାନ୍ୟ ବ୍ୟକ୍ତି । ପାଖ ଆଖ ଗ୍ରାମର ହଜାର ହଜାର ଲୋକ । ସମସ୍ତେ ବସିବା ପାଇଁ ସୁବିଧା କରିବା ଅସମ୍ଭବ ବୋଧ ହେଲା ।

ଉତ୍ସବରେ ଇଲେକ୍‌ଟ୍ରିକ୍ ଆଲୁଅ ଜଳିଲା ନାହିଁ । ଭୋଜି ହେଲା ନାହିଁ । ଥିଏଟର ମଧ୍ୟ ହୋଇ ନ ଥିଲା । ତଥାପି ସତ୍ୟସୁନ୍ଦରପୁର ହସୁଥିଲା ।

ପ୍ରଧାନ ଶିକ୍ଷକ ସଭାରେ ଘୋଷଣା କଲେ, "ପିଲାମାନଙ୍କ ସଂଗୃହୀତ ଟଙ୍କାରୁ ଅଧେ ନେଉଳପୁର ଲୋକଙ୍କୁ ଦିଆଯିବ ଘର ତୋଳିବା ପାଇଁ, ରିକ୍‌ସାଚାଳକ ଆଉ ତାରି ଭଳି ଆଉ ନଅ ଜଣ ପିଲାଙ୍କୁ ଛାତ୍ରାବାସରେ ରଖାଇ ଖାଇବାକୁ ଦିଆଯିବ । ସେମାନେ ହେବେ ସ୍କୁଲର ଛାତ୍ର । ଅବସରରେ

ପଢ଼ୁଥିବା ଛାତ୍ରମାନଙ୍କୁ ସମସ୍ତ ସମୟରେ ଏ ପାଣ୍ଠିରୁ ସାହାଯ୍ୟ ଦିଆଯିବ, ଏହାହିଁ ପିଲମାନଙ୍କର ଇଚ୍ଛା ।"

ସେତେବେଳେ ସେ ଅଞ୍ଚଳ ତାଳିମାଡ଼ରେ କମ୍ପିଗଲା । ଆମେ ଆଶ୍ଚର୍ଯ୍ୟ ହୋଇଗଲୁ ।

ଆହୁରି ଆଶ୍ଚର୍ଯ୍ୟ ହେଲୁ, ଯେତେବେଳେ ସେହି କୃପଣ, କଞ୍ଜୁସ ସରପଞ୍ଚ ନଟବାବୁ ଠିଆ ହୋଇ ଘୋଷଣା କଲେ—ପିଲାମାନେ ଯେତିକ ଚନ୍ଦା ସଂଗ୍ରହ କରିଅଛନ୍ତି, ମୁଁ ସେତିକ ଟଙ୍କା ଦେଉଅଛି । ତାକୁ ଗୋଟିଏ ସ୍ଥାୟୀ ପାଣ୍ଠି କରାଯାଉ । ଗରିବ ପିଲାମାନଙ୍କୁ ଦରକାର ବେଳେ ସାହାଯ୍ୟ ଦିଆଯିବ ।

ସ୍କୁଲ ପରିଦର୍ଶନ ବହିରେ ମନ୍ତ୍ରୀ ଲେଖିଦେଇ ଗଲେ,—ଏହାହିଁ ହେଉଛି ଆଦର୍ଶ ଶିଶୁମେଳା । ସତ୍ୟସୁନ୍ଦରପୁର ନାମ ସାର୍ଥକ ହୋଇଛି ।






ବନ ମାଇନର ସ୍କୁଲରେ ପଢ଼ୁଛି । ବୟସ ଚଉଦରୁ ବେଶି ହେବ ନାହିଁ ।

ସ୍କୁଲରେ ଗୋଟିଏ ବଗିଚା ଥାଏ । ଅଳ୍ପ ଜମି । ଖୁବ୍ ବେଶିରେ ଦଶ ବାରଟା ପଟାଳି ହୁଏ । ସେଥିରେ ବାଇଗଣ, ମୂଳା ଭେଣ୍ଡି ହେଉକା ଫସଲ ଲଗେ ।

ସେ କାଳରେ ପାଠୁଆ ପିଲାମାନେ ବଗିଚା କାମ କରୁ ନ ଥିଲେ । ଦେହ ମିହନ୍ତ କଲେ ସମସ୍ତେ ଛି-ଛି କରିବେ ବୋଲି ସେମାନେ ଭାବୁଥିଲେ ।

ମାତ୍ର ଆଜିକାଲି ସେ କଥା ନାହିଁ । ମହାତ୍ମା ଗାନ୍ଧି ନିଜ ହାତରେ ସବୁ କାମ କରୁଥିଲେ । ଏପରି କି, ପାଇଖାନା ମଧ୍ୟ ସଫା କରୁଥିଲେ । ତାହା ଦେଖି ସମସ୍ତଙ୍କ ଆଖି ଖୋଲିଗଲା । ପାଠୁଆ ପିଲାମାନେ ଆଜିକାଲି ହାତ ମିହନତ କରିବାକୁ ପଛଉନାହାନ୍ତି ।

ସ୍କୁଲରେ ଜଣେ ପିଅନ ଥିଲା । ତା ନାଁ ବାପ୍ନା । ବଗିଚାର ସବୁ କାର୍ଯ୍ୟ ତାକୁ କରିବାକୁ ପଡ଼େ । ତେଣୁ ସେ କଅଣ କରେ ନା, ପାଖରେ ଥିବା ବଜାରକୁ ଚାଲିଯାଏ । ମଲିମୁଣ୍ଡିଆ ଲୋକ ଦେଖି କହେ, "ହେ' ଚାଲ୍ ! ଇସ୍କୁଲ୍ ବଗିଚାରେ କାମ କରିବୁ । ମଜୁରି ତ ପାଇବୁ ତା ଛଡ଼ା ପେଟେ ଖାଇବୁ ।"



ବେଶି ରୋଜଗାର ଆଶାରେ କେହି କେହି ବାପ୍ନା କଥାରେ ପଡ଼ୁଯାନ୍ତି । ବାପ୍ନା ପିଣ୍ଡାରେ ଗୋଡ଼ ଲମ୍ବାଇ ବସେ । ମୂଲିଆ ମନ ଦେଇ

କାମ କରୁଥାଏ । ଦିନ ବାରଟା ବେଳକୁ ବାପୁା ଙ୍କ ଆଉ ଥପୁ ଧରେ ! ଏଣୁ ତେଣୁ ଗୁଡ଼ାଏ ଦୋଷ ଦେଇ ମୂଳିଆକୁ ବକେ । ତାକୁ ଗ୍ଳଲଯିବାକୁ କହେ ।

ମୂଳିଆ ସହି ନ ପାରି କାମରୁ ଉଠେ ଓ ମୂଲ ମାଗେ । ବାପୁା କହେ—"ତୁ ନପଟ ଓଲୁଟାଏ । କାମ କଲୁ ଯେ ପଇସା ପାଇବୁ ? ଭଲ ଗତି ଅଛି ତ ଚଞ୍ଚଳ ଏଠାରୁ ଗ୍ଳଲଯା ।"

ମୂଳିଆ ଯଦି ଓଲଟି କିଛି କହିଲା, ତେବେ ରକ୍ଷା ନାହିଁ । ବେଶି ଗାଳି ଶୁଣିବାକୁ ପଡ଼େ । ବେଳେ ବେଳେ ବାପୁା ମାରିବାକୁ ହାତ ଉଞ୍ଚାଏ । କେତେବେଳେ ବି ତାହାର ହାତ ଦୁଇଟା ମୂଳିଆ ଗାଲରେ ବାଜିଯାଏ ।

କେତେକ ପିଲା ବାପୁା ଓ ମୂଳିଆର କଳିତକରାଳ ନିତି ଦେଖନ୍ତି । ତାକୁ ତାମସା ମନେ କରି ହସିଦେଇ ଗ୍ଳଲଯାଆନ୍ତି ।

ବନର ମନ ପାଠ ପଢ଼ାରେ ଯେତିକି ଥାଏ, ବାପୁାର ରଙ୍ଗ ଢଙ୍ଗ ଦେଖିବାରେ ସେତିକି ଥାଏ । ଦେଖି ଦେଖି ବନ ଆଉ ସହିପାରିଲା ନାହିଁ ।

ଦିନେ ସେ ପ୍ରଧାନ ଶିକ୍ଷକଙ୍କୁ କହିଲା—"ସାର୍, ବାପୁା ବଗିଗ୍ଳ କାମ ପାଇଁ ମୂଳିଆ ଡାକି ଆଣୁଛି, ତାଙ୍କୁ ପଇସା ତ ଦେଉନାହିଁ, ପୁଣି ଯେଉଁ ଗାଳି ମନ୍ଦ କରୁଛି, ତାହା କାନରେ ଶୁଣି ହେବ ନାହିଁ । ମୂଳିଆ କିଛି ଉତ୍ତର କଲେ ତାକୁ ମାଡ଼ ଖାଇବାକୁ ପଡ଼ୁଛି । ଆପଣ ଏକଥା ବୁଝନ୍ତୁ ।"

ପ୍ରଧାନ ଶିକ୍ଷକ କହିଲେ, "ବଗିଗ୍ଳ କାମ ବାପୁା କରିବାର କଥା । ସେ ଯେମିତି କରୁ, ମୁଁ କାହିଁକି ସେ କଥା ବୁଝିବି ?"

ବନ କହିଲା, "ସାର୍, ଆପଣ ଏ ସ୍କୁଲର ମାଲିକ । ଭଲ ମନ୍ଦ, ହାନି ଲାଭ ଆପଣ ନ ବୁଝିଲେ ଆଉ କିଏ ବୁଝିବ ? ଆପଣ ଥାଉଁ ଥାଉଁ ଗୋଟାଏ ପିଅନ ଗରିବଙ୍କୁ ହଇରାଣ କରିବ, ଏ ପାପ କଣ ଆପଣଙ୍କୁ ଲାଗିବ ନାହିଁ ? ଏଥିପାଇଁ କଅଣ ଆପଣଙ୍କର ନିନ୍ଦା ହେବ ନାହିଁ ?"

ପ୍ରଧାନ ଶିକ୍ଷକ ଦେଖିଲେ, ବନ କଥା କହିଲା ବେଳେ ତାହାର ଦେହ ଥରି ଉଠୁଛି । ମୁହଁ ରଙ୍ଗା ପଡ଼ିଯାଉଛି । ଆଖିରେ ଲୁହ ଜକେଇ ଆସୁଛି । ତାହାର ମନ ମୂଳିଆଙ୍କ ପ୍ରତି ଦୟାରେ ତରଳିଯାଉଛି ।

ସେ ଭାବିଲେ—ବନ ଶ୍ରେଷ୍ଠ ପିଲାଟିଏ । ସେ ଯାହା କହୁଛି, ତାହା ଖାଣ୍ଟି ସତ । ମୁଁ ବନଠାରୁ ବୟସରେ କେତେ ବଡ଼, ବିଦ୍ୟାରେ କେତେ

ବଡ଼, ଅଥଚ ବନ ମୋତେ ବୁଦ୍ଧିରେ ବଳେଇଗଲା । ପ୍ରକୃତରେ ବାପ୍ପା ଯାହା କରୁଛୁ, ସେଥିପାଇଁ ଭଗବାନ ମୋତେ ଦଣ୍ଡିବେ । ମୁଁ ମଣିଷ ହେଲେ ହେଁ ସମସ୍ତେ ମୋତେ ପଶୁଟାଏ ବୋଲି କହିବେ ।

ପ୍ରଧାନ ଶିକ୍ଷକ ବନର କଥା ଶୁଣି ନିଜର ଭୁଲ୍ ବୁଝିପାରିଲେ । ସେ ଅତି ଆଦରରେ ବନକୁ କୁଣ୍ଢାଇ ପକାଇ କହିଲେ—"ବନରେ, ତୁ ଆଜି ମୋତେ ମହାଶିକ୍ଷା ଦେଲୁ । ଏତେ ପିଲାଙ୍କ ଭିତରେ ତୁ ରତ୍ନଟାଏ । ଭଗବାନ ତୋର ମଙ୍ଗଳ କରିବେ । କାଲିଠାରୁ ବାପ୍ପା ବଗିଚା କାମ ନିଜେ କରିବ । ମୂଲିଆ ଲଗାଇ ପାରିବ ନାହିଁ ।"

ସେଦିନଠାରୁ ବଗିଚା କାମ କରିବାକୁ ଆଉ ମୂଲିଆ ଆସିଲେ ନାହିଁ । ବନର ମନର ଦୁଃଖ ଦୂର ହେଲା ।






ଲଣ୍ଡନ ସହର । କୁହୁଡ଼ିରେ ମୁହଁକୁ ମୁହଁ ଦିଶୁ ନ ଥାଏ । ଉଇଲିୟମ ବଏସ୍ ନାମକ ଶିକାଗୋର ଜଣେ ପୁସ୍ତକ ବ୍ୟବସାୟୀ ରାସ୍ତାରେ ଏ ପାଖ ସେ ପାଖ ହେଉଥାନ୍ତି । ଗୋଟିଏ ଶ୍ରେଷ୍ଠ ପିଲା ତାଙ୍କ ଗତିବିଧି ଲକ୍ଷ୍ୟକରି ପାଖକୁ ଗଲା ଏବଂ ତାଙ୍କୁ ନମସ୍କାର କରି ପଚାରିଲା, "ମହାଶୟ, ମୁଁ ଜଣେ ସ୍କାଉଟ୍ । ଆପଣଙ୍କୁ କିଛି ସାହାଯ୍ୟ କରିପାରେ କି ?"

ବଏସ୍ କହିଲେ, "ମୁଁ ଅମୁକ ଠିକଣାଟି ଖୋଜୁଛି । ମତେ ଯଦି ସେ ସ୍ଥାନଟି ଦେଖାଇ ଦେଇପାରନ୍ତ, ବଡ଼ ଉପକୃତ ହୁଅନ୍ତି ।" ପିଲାଟି କହିଲା, "ମହାଶୟ, ମୋ ସାଙ୍ଗରେ ଆସନ୍ତୁ ।"

ଅଳ୍ପ ସମୟ ଭିତରେ ସେ ପିଲା ବଏସ୍‌ଙ୍କୁ ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇଦେଲା । ଭଦ୍ରବ୍ୟକ୍ତି ଖୁସି ହୋଇ ତାଙ୍କ ଥଳୀରୁ ଗୋଟିଏ ଶିଲିଂ ବାହାର କରି ସେ ବାଳକକୁ ଯାଚିଲେ । ମାତ୍ର ସେ ତାହା ନେଲା ନାହିଁ ।

ସାଙ୍ଗେ ସାଙ୍ଗେ ତାଙ୍କୁ ନମସ୍କାର ଜଣାଇ କହିଲା, "ମହାଶୟ, ମୁଁ ଜଣେ ସ୍କାଉଟ୍ । ସାମାନ୍ୟ ଭଦ୍ରତା ପାଇଁ ସ୍କାଉଟ୍‌ମାନେ କୌଣସି ବକ୍‌ସିସ୍ ନିଅନ୍ତି ନାହିଁ ।"

ବଏସ୍ କିଛି ବୁଝି ନ ପାରି ପଚାରିଲେ, "କଣ କହିଲ ? ତୁମେ କଣ...?" ବାଳକ କହିଲା, "ଆପଣ କଣ ସ୍କାଉଟ୍‌ମାନଙ୍କ ବିଷୟରେ କିଛି ଜାଣନ୍ତି ନାହିଁ ?"

"ନା, ମୁଁ ଜାଣେ ନା; କିନ୍ତୁ ଜାଣିବାକୁ ମୋର ଇଚ୍ଛା ହେଉଛି ।"

"ତେବେ ମୋ ସାଙ୍ଗରେ ଆସନ୍ତୁ ।"

"ଟିକିଏ ସମୟ ଅପେକ୍ଷା କରନ୍ତୁ, ମୁଁ ଏଠାରେ କାମ ଶୀଘ୍ର ସାରି ଦେଇ ତୁମ ସାଙ୍ଗରେ ଯାଉଛି ।"

ପିଲାଟି ରାଜି ହେବାରୁ ବଏସ୍ ସେଠାରେ ତାଙ୍କ କାମ ଶେଷ କରି ତା ସାଙ୍ଗରେ ଗଲେ । ସେ ତାଙ୍କୁ ସ୍କାଉଟ୍ ଆନ୍ଦୋଳନର ପ୍ରତିଷ୍ଠାତା ସାର୍ ବେଡେନ୍ ପାୱେଲ୍‌ଙ୍କ କାର୍ଯ୍ୟାଳୟକୁ ନେଇଗଲା । ବଏସ୍ ସେଠାରେ ସ୍କାଉଟିଂ ବିଷୟରେ ସବୁ କଥା ବୁଝି ଗୋଛାଏ ଛପା କାଗଜପତ୍ର ଧରି ନିଜ ଦେଶକୁ ଫେରିଲେ ।

ଆମେରିକାରେ ପହଞ୍ଚି ସେ ତାଙ୍କର ବନ୍ଧୁଙ୍କ ସାଙ୍ଗରେ ମିଶି ୱାଶିଂଟନ୍‌ଠାରେ ସ୍କାଉଟ୍ ଆନ୍ଦୋଳନର ପ୍ରଥମ କେନ୍ଦ୍ର ପ୍ରତିଷ୍ଠା କଲେ । ସେଦିନ ଥିଲା ୧୯୧୦ ମସିହା ଫେବୃଆରି ମାସ ୮ ତାରିଖ । ସେଥିପାଇଁ ଏହି ଦିନଟିକୁ ଆମେରିକାର ସ୍କାଉଟ୍‌ମାନେ ବାର୍ଷିକ ଉତ୍ସବ ରୂପେ ପାଳନ କରନ୍ତି ।

ସ୍କାଉଟ୍ ଆନ୍ଦୋଳନ କିପରି ଆମେରିକାକୁ ପ୍ରସାରିତ ହୋଇଥିଲା, ଏଇ ତାର ଅଦ୍ଭୁତ କାହାଣୀ । ଏହା ମୂଳରେ ଥିଲା ଗୋଟିଏ ଛୋଟ ଇଂରେଜ ବାଳକର ଭଦ୍ରତା ଏବଂ ଅନ୍ୟକୁ ସାହାଯ୍ୟ କରିବାର ମନୋବୃତ୍ତି ।

ପୃଥିବୀର ସବୁ ଦେଶରେ ଏହିପରି ବହୁ ଭଦ୍ର ବାଳକବାଳିକା ଅଛନ୍ତି । ସେମାନଙ୍କ ନିଃସ୍ୱାର୍ଥ ସେବା ଓ ଉପକାର ମନୁଷ୍ୟଜାତିର ଗର୍ବ ଓ ଗୌରବ । ଭାରତୀୟ ବାଳକବାଳିକା ଏ ଦିଗରେ ପଛୁଆ ନ ହେଲେ

କ ବେଳେ ବେଳେ ଜଣ ଜଣଙ୍କ ବ୍ୟବହାର ଦେଖି ମନରେ ଦୁଃଖ ଆସେ । ସେଦିନ ଜଣେ ଶିକ୍ଷକଙ୍କ ମୁହଁରୁ ମୁଁ ଯାହା ଶୁଣିଥିଲି, ସେହି ଘଟଣାଟି ତୁମକୁ ଜଣାଇବା ଉଚିତ ମନେ କରୁଛି ।

ଲସି ଦୋକାନ ଆଗରେ ଖୁବ୍ ଭିଡ଼ ହୋଇଥାଏ । ତିନି ଜଣ ଯୁବକ ସେମାନଙ୍କ ସାଇକେଲକୁ ରାସ୍ତା ମଝିରେ ରଖିଦେଇ ଲସି ଖାଉଥାନ୍ତି । ଠିକ୍ ମଝିରେ ନ ହେଲେ ମଧ୍ୟ ରାସ୍ତାକୁ ପ୍ରାୟ ଦୁଇ ମିଟର ମଡ଼ାଇ ସାଇକେଲ୍ ଠିଆ କରିଦେଇଥାନ୍ତି । ଅଳ୍ପ ଦୂରରେ ପହରା ଦେଉଥାନ୍ତି ଦୁଇଜଣ ଟ୍ରାଫିକ୍ ପୋଲିସ୍ । ଜଣେ ଆସି ସାଇକେଲକୁ କଡ଼େଇ ରଖିବାକୁ ମାଲିକଙ୍କୁ କହିଦେଇଗଲେ । ତାହା ଶୁଣି ଜଣେ ପିଲା ତା ସାଇକେଲ ଉଠାଇନେଲା । ମାତ୍ର ଅନ୍ୟ ଦୁଇ ଜଣ ତା କଥାରେ କର୍ଣ୍ଣପାତ କଲେ ନାହିଁ ।



ଏହି ସମୟରେ ସେହି ରାସ୍ତାରେ ଗୋଟିଏ ଜିପ୍ ଆସିଲା । ରାସ୍ତା ସଙ୍କୀର୍ଣ୍ଣ ଥିବାରୁ ଡ୍ରାଇଭର ହର୍ନ୍ ଦେଲେ । ତଥାପି ବାବୁମାନେ ସାଇକେଲ୍

ଉଠାଇଲେ ନାହିଁ । ଜିପ୍ ଚାଳକ ଗାଡ଼ିର ବେଗ ଟିକିଏ କମାଇ ଦେଇ ଆଗେଇବାକୁ ଚେଷ୍ଟା କଲେ । ତାଙ୍କ ଜାଣିବାରେ ହେଉ ବା ଅଜାଣତରେ ହେଉ, ଗୋଟାଏ ସାଇକେଲ ଜିପ୍‌ରେ ବାଜି ପଡ଼ିଗଲା । ପଛେ ପଛେ ଆଉ ଗୋଟାଏ ମଧ୍ୟ ତା ସାଙ୍ଗେ ଯୋଗ ଦେଲା । ଚାଳକ ବ୍ରେକ୍ ନ ଦେଇଥିଲେ ଜିପ୍ ମାଡ଼ିଯାଇ ସାଇକେଲ ଦୁଇଟି ଭାଙ୍ଗି ଯାଇଥାନ୍ତା, ମାତ୍ର ସେ ଆଗେଇ ନ ଯାଇ ଗାଡ଼ି ଅଟକାଇଲେ ।

ତାପରେ କାହାର ଦୋଷ ଏହା ସାବ୍ୟସ୍ତ କରିବା ପାଇଁ ଆରମ୍ଭ ହୋଇଗଲା ତୁମୁଳ ବାକ୍‌ଯୁଦ୍ଧ । ଦେଖଣାହାରୀଙ୍କ ମଧ୍ୟରେ କେତେକ ଜିପ୍‌ଚାଳକ ଓ କେତେକ ସାଇକେଲ ମାଲିକଙ୍କ ପକ୍ଷ ଗ୍ରହଣ କଲେ । ଦ୍ୱିତୀୟ ପକ୍ଷର ଯୁକ୍ତି ହେଲା ଯେ ରାସ୍ତାରେ ସମସ୍ତଙ୍କର ସମାନ ଅଧିକାର ଅଛି, ଯେହେତୁ ଭାରତ ଏକ ଗଣତନ୍ତ୍ର ଦେଶ !

ଜଣେ ପୋଲିସ ଘଟଣା ସ୍ଥଳକୁ ଆସି ଗଣ୍ଡଗୋଳ ଭାଙ୍ଗିବାକୁ ଚେଷ୍ଟା ନ କରିଥିଲେ ଖୁବ୍ ଶୀଘ୍ର ହାତାହାତି ଆରମ୍ଭ ହୋଇଯାଇଥାନ୍ତା । ରକ୍ଷା ହେଲା ଲୁହାର ଯନ୍ତ୍ର ଦୁଇଟା କେବଳ କଚଡ଼ା ଖାଇଥିଲେ, କାହାର କିଛି ଭାଙ୍ଗି ନ ଥିଲା ଏବଂ ଲସି ଖାଇଥିବା ଯୋଗୁଁ ଛାତ୍ର ଦୁହିଁଙ୍କ ମଗଜ ଟିକିଏ ଥଣ୍ଡା ଥିଲା ।

ଯୁଦ୍ଧକ୍ଷେତ୍ର ଶାନ୍ତ ପଡ଼ି ଆସିବାରୁ ଯେ ଯାହାର ବାଟ ଧରିଲେ । ଖେଳ ଛୁଟିପରେ ସାଇକେଲ ଚଢ଼ାଳି ଛାତ୍ର ଦୁହେଁ ସ୍କୁଲକୁ ଫେରିଲେ । ସେମାନଙ୍କ ଦିଗ୍‌ବିଜୟ ବାର୍ତ୍ତା ଶ୍ରେଣୀରେ ପ୍ରଚାରିତ ହେବାକୁ ବେଶି ସମୟ ଲାଗିଲା ନାହିଁ । ଶିକ୍ଷକଙ୍କ କାନକୁ ଯିବାରୁ ସେ ଦୁଃଖ ପ୍ରକାଶ କରି ଶ୍ରେଣୀର ପିଲାମାନଙ୍କୁ କହିଲେ, "ପାଠଶାଠ ପଢ଼ି ତୁମ୍ଭେମାନେ ଯଦି ଭଦ୍ରତା ନ ଶିଖିଲ, ତେବେ ଏ ଦେଶର ଗତି କୁଆଡ଼େ ? ରାସ୍ତା ଅବରୋଧ କରିବା ଏକ ଗୁରୁତର ଅପରାଧ । ମୋବାଇଲ କୋର୍ଟ ଦେଖିଥିଲେ ସାଙ୍ଗେ ସାଙ୍ଗେ ଜୋରିମାନା କରିଦେଇଥାନ୍ତା । ତୁମଠାରୁ ଟଙ୍କା ଆଦାୟ ନ ହେବା ପର୍ଯ୍ୟନ୍ତ ସାଇକେଲ ଜବତ କରି ରଖିଥାନ୍ତା ।"

ଜଣେ ଲସିଖିଆ ଛାତ୍ର ଉଠି କହିଲେ, "ରାସ୍ତା ପାଖ ଦୋକାନରୁ ସଉଦା କଲାବେଳେ ଆମେ ତ ପୁଣି ସାଇକେଲ କେଉଁଠି ରଖିବୁ ? ସେଠି କଣ ଷ୍ଟାଣ୍ଡ୍ ଅଛି ?"

ଶିକ୍ଷକ କହିଲେ, "ରାସ୍ତା କଡ଼କୁ ଏପରି ଭାବରେ ରଖିବ ଯେପରି କାହାର ଯାତାୟାତରେ ଅସୁବିଧା ନ ହୁଏ । ସାଧାରଣ ଶିଷ୍ଟାଚାର-ଦୃଷ୍ଟିରୁ ଏହା କରିବା ଉଚିତ । ଚାଲୁଥିବା ଲୋକ ସାଇକେଲ ଚଢ଼ାଳିକୁ ବାଟ ଦେବ, ସାଇକେଲ ସେହିପରି ମଟରଗାଡ଼ିକୁ ବାଟ ଛାଡ଼ିଦେବ । ଦ୍ରୁତଗାମୀ ଗାଡ଼ିକୁ ସମସ୍ତେ ବାଟ ଛାଡ଼ିଦେବା ଉଚିତ । ଏହାହିଁ ନିୟମ, ଏହାହିଁ ଭଦ୍ରତା ।

"ଦେଖାଯାଏ କେତେକ ପିଲା ରାସ୍ତା ମଝିରେ ଠିଆ ହୋଇ ବା ସାଇକେଲ ଧରି କଥାବାର୍ତ୍ତା ହେଉଥାନ୍ତି । ଗାଡ଼ି ହର୍ନ୍ ଦେଲେ ବି ପାଖାନ୍ତି ନାହିଁ । ଏ କେଉଁ ପ୍ରକାର ବଡ଼ଲୋକି ? ଏଥିରେ କଣ ସେମାନଙ୍କର ମୂଲ୍ୟ ବଢ଼ିଯାଏ ? ସେମାନେ ବୋଧହୁଏ ତାହାହିଁ ଭାବନ୍ତି । ତୁମ୍ଭେମାନେ ଯଦି ଏଭଳି ଆଚରଣ କରିବ, ତେବେ ମୂର୍ଖମାନେ କଣ ନ କରିବେ ?"

ଶିକ୍ଷକଙ୍କଠାରୁ ଏଇ ଘଟଣା ଶୁଣିଲାବେଳେ ମୁଁ ଭାବୁଥିଲି ଲଣ୍ଡନର ସେଇ ସ୍କାଉଟ୍ ପିଲାଟି କଥା । ଆଚରଣରେ କେତେ ପ୍ରଭେଦ !



# ପାଗଲ

## ବାମନଚରଣ ମିଶ୍ର



ହାତରେ ଗୋଟିଏ ଦଉଡ଼ା । ଦଉଡ଼ାରେ ଦୁଇଟି ଗଣ୍ଠି ପଡ଼ିଛି । ଗୋଟିଏ କଳ୍ପିତ ଜୀବ ଆଉ ଅନ୍ୟଟି, ଗୋଟିଏ ପଥର । ଆଗେଇ ଚାଲିଛି ମଣିଷଟି । ଅଣ୍ଟାରେ ବାନ୍ଧି ଦେଇଛି ଦଉଡ଼ିଟିକୁ । ମଝିରେ ମଝିରେ ପଛକୁ ଚାହୁଁଛି । ସ୍ନେହବୋଳା ଡାକ ଶୁଭୁଛି ମଝିରେ ମଝିରେ । ସେ ହସି ଉଠୁଛି ପୁଣି ଟିକକପରେ କାନ୍ଦି ପକାଉଛି । ସବୁବେଳେ ସେ ଚାଲୁଛି, ଖିଆପିଆ ପ୍ରତି ଧ୍ୟାନ ଧାରଣା ନାହିଁ ତାହାର । ବାଟୋଇ ବିସ୍ମିତ ହୋଇ ଏକୁ ଚାହାନ୍ତି । ଦରଦୀ ଲୋକ ଦୀର୍ଘ ନିଃଶ୍ୱାସ ଛାଡ଼ି ଗନ୍ତବ୍ୟ ପଥରେ ଚାଲି ଯାଆନ୍ତି । ଏ ଲୋକଟି କିଏସେ ?

ଏଇ ଲୋକଟିର ନାମ ଜଲ୍ଲ । ସେ ଗୋଟିଏ ଶଗଡ଼ିଆ । ସେ ଥିଲା ଗୋଟିଏ ପୁରୁଣା କରଦ ରାଜ୍ୟର ଏକ ପ୍ରଖ୍ୟାତ ଗ୍ରାମ କନ୍ଦରପୁରରେ । ସେ ଗ୍ରାମର ବିଖ୍ୟାତ ଧନାଢ୍ୟ ବ୍ୟକ୍ତି ଅର୍ଜ୍ଜୁନ ଦାସଙ୍କର ଥିଲା ବିଶ୍ୱସ୍ତ ଭୃତ୍ୟ । ଗ୍ରାମଟି ମହାନଦୀ କୂଳରେ ଅବସ୍ଥିତ । ସେଠି ଅର୍ଜ୍ଜୁନ ଦାସଙ୍କର ଅଖଣ୍ଡ

ପ୍ରଜାପତି, ତାଙ୍କ ଘରଟି ଏକ ସୁରମ୍ୟ ଉଦ୍ୟାନ ମଧ୍ୟରେ ଅବସ୍ଥିତ । ପକ୍କା ଘରଟି ନାନା ପୌରାଣିକ ଚିତ୍ରରେ ଚିତ୍ରିତ । ବଗିଚ୍ଚର କଡ଼କୁ ଲାଗି ଶଗଡ଼ିଆ ଓ ହଳିଆମାନଙ୍କ ପାଇଁ ଛୋଟ ଛୋଟ ଚାଳଘର । ଏହି ଘରେ ଶ୍ରମିକମାନେ ରହନ୍ତି ।

ଜଲଲଟି ନିଛକ ଗାଉଁଲିଆ, ଦେଖିବାକୁ ଅସୁନ୍ଦର, ହେଲେ ସେ ସବୁ ଗୁଣର ଆକର । ସେ ବଡ଼ ସାଧାସିଧା ଆଉ ଦରଦୀ । ସେଦିନ ମାଲ ନେଇ ସେ ଯାଇଥିଲା ଟାଉନ୍‌କୁ । ଗଡ଼ରୁ ଫେରୁଥାଏ । ଫେରିବା ବାଟରେ ସେ ଦେଖିଲା ସେ ଗୋଟାଏ ଅପରିଚ୍ଛନ୍ନିଆ, ହାଡ଼ୁଆ କୁକୁରଟିକୁ ଦଳେ କୁକୁର ବେଢ଼ିଯାଇ କ୍ଷତ ବିକ୍ଷତ କରୁଛନ୍ତି । ତାର କୋମଳ ହୃଦୟ ତରଳି ଗଲା । ଏ ଦୃଶ୍ୟ ଅସହ୍ୟ ହେଲା ତାକୁ । ଶଗଡ଼ଟାକୁ ଠିଆ କରିଦେଲା । ଓହ୍ଲାଇ ପଡ଼ିଲା । ପାଞ୍ଚଣଟାକୁ ହାତରେ ଧରି ଆଗେଇଲା ସେ । ତାର ଘଡ଼ଘଡ଼ିଆ ପାଟି ଆଉ ନିର୍ଘାତ ପ୍ରହାରକୁ ଦେଖି କୁକୁରଟିକୁ ବେଢ଼ିଥିବା କୁକୁରଗୁଡ଼ାକ ଯିଏ ଯୁଆଡ଼େ ପଳାଇଲେ । ଏଥର କୁକୁରଟି ମୁକ୍ତ । ଗନ୍ତବ୍ୟ ପଥ ତା ପାଇଁ ଉନ୍ମୁକ୍ତ । ଜଲଲ ଯାଇ ଗାଡ଼ିରେ ବସିଗଲା । ସେ ପଛକୁ ଚାହେଁ ତ କୁକୁରଟା ତା ପିଛା ଧରିଛି । ଗୁଡ଼ାଏ ବାଟ ଗଲା ପରେ ଜଲଲ ଗାଡ଼ି ଅଟକାଇଲା । କୁକୁରଟା ଆଡ଼କୁ ଦୁଇ ପାଉଣ୍ଡ ଆଗେଇ ଗଲା । କୁକୁରଟି ଭୟରେ ଲାଞ୍ଜଟାକୁ ତାର ପଛଗୋଡ଼ ସନ୍ଧିରେ ପୂରାଇଦେଲା । କାନ ଦୁଇଟାକୁ ବଙ୍କାଇ ଦେଲା । ଆଖିଦୁଇଟିକୁ ମିଟି ମିଟି କଲା । ଭୋକିଲା ଚାହାଁଣିରେ ବିକଳତା ଫୁଟାଇ ଦେଲା, ଶଗଡ଼ ବନ୍ଦ ହେବାରୁ ତାର ଗତି ବି ବନ୍ଦ ହୋଇଯାଇଥିଲା ।

ଜଲଲ ପୁଣି ଗାଡ଼ିରେ ଚଢ଼ିଲା । ଗାଡ଼ି ଚଳାଇ ଦେଲା, କୁକୁର ବି ଚାଲିଲା । ଉତ୍ତ୍ୟକ୍ତ ହୋଇ ଉଠିଲା ଜଲଲ । ପାଞ୍ଚଣ ଉଠାଇ କୁକୁରଟାକୁ ଡରାଇଲା ଜଲଲ । ଭୟରେ କୁକୁରଟି କିଛି ବାଟ ପଛେଇଗଲା, ଖଣ୍ଡେ ଦୂରରେ ଯାଇ ବସିଲା । ପୁଣି ଶଗଡ଼ ଚାଲିଲା । କୁକୁର ବି ଉଠିଲା । ସନ୍ତର୍ପଣରେ ଶଗଡ଼ ପଛେ ପଛେ ଗୋଡ଼ାଇଲା । ଜଲଲ ମନରେ ଦୟା ହେଲା, ସେ କୁକୁରଟିକୁ ନିଜ ପାଖକୁ ଡାକିଲା । କୁକୁରଟା ଡରି ଡରି ଜଲଲ ପାଖକୁ ଆସିଲା । ତା'ର ପଛ ପଟଟା ବଙ୍କେଇ ଯାଇଥାଏ । ହାଡ଼ଗୁଡ଼ିକ ଗଣି ହୋଇ ଯାଉଥାଏ । ତାର ଦୁର୍ବଳିଆ ଶରୀରଟିକୁ ଦେଖି ଜଲଲ

ମନରେ ଦୟା ହେଲା । ସେ କହିଲା—ତେବେ ଚାଲ ମୋ ସଙ୍ଗରେ । କୁକୁରଟି ବୁଝିଗଲା । ସେ ଶଗଡ଼ ପଛରେ ନ ଯାଇ ଆଗେ ଆଗେ ଚାଲିଲା । ଜଲାଲ ଘରେ ପହଞ୍ଚି ବଳଦ ଦୁଇଟିକୁ ଗୁହାଳରେ ବାନ୍ଧିଦେଲା । ପେଜପାଣି ତାଙ୍କୁ ଦେଇଦେଲା । ବସାଘରକୁ ଫେରି ଶୋଇବା ଘର କୋଣରେ ପାଳ ମେଞ୍ଚାଏ ପକାଇ ଦେଲା । ସେଇଠି ଶୋଇବାକୁ କୁକୁରଟିକୁ କହିଲା । ସୁନା ପିଲାଟି ପରି କୁକୁରଟା ପାଳ ଉପରେ ଦେହ ମେଲାଇ ଶୋଇ ପଡ଼ିଲା ।



ଜଲାଲ ଚୂଲି ଲଗାଇ ଭାତ ବସାଇଲା, ଭାତରେ ମୁଠେ ମୁଗ ଆଉ ଗଣ୍ଡେ ଲୁଣ ପକାଇ ଦେଲା । ପେଜମରା ଭାତକୁ ଗୋଟାଏ ଟଙ୍କା ଥାଳିରେ ବାଢ଼ିଲା । ଟ୍ରେଟିଆ ଖାଣ୍ଡିରେ କୁକୁର ପାଇଁ ଭାତ ଥୋଇଦେଲା । ସତେ ଅବା ଅମୃତମୟୀ ଜନନୀ ସ୍ନେହ କାଙ୍ଗାଳ ଛୁଆଟିକୁ ଅମୃତ ବାଢ଼ି ଦେଲା,

ପେଟେ ଖାଇ ଦେଇ କୁକୁରଟି ଶୋଇ ପଡ଼ିଲା ପାଳ ଉପରେ । ଆନନ୍ଦରେ ଜୁଳୁ ଜୁଳୁ କରି ଚାହିଁ, ଲାଞ୍ଜ ହଲାଇ କୃତଜ୍ଞତା ଜଣାଇଦେଲା ।

ଜଲାଲ ପରିବାରର ସଦସ୍ୟ ହେବାକୁ କୁକୁରଟିକୁ ସ୍ୱୀକୃତି ମିଳିଗଲା ଖାଉନ୍ଦଙ୍କଠାରୁ । କୁକୁରଟି ବଡ଼ ଭଲ । ବୁଦ୍ଧିଆ, ବିଶ୍ୱସ୍ତ ଆଉ ବିଚକ୍ଷଣ ବୁଦ୍ଧି ତା'ର । ସ୍ନେହଶୀଳତା ଆଉ ଭଦ୍ରତାରେ ସେ ଜଲାଲକୁ ମୁଗ୍‌ଧ କରି-ଦେଲା । କ୍ରମେ ଗାଁ ଗୋଟାକର କୁକୁର ଆସି ଇଆରି ପାଖରେ ମେଳ ହେଲେ । ବିନବାଡି କୁକୁର ପଲ୍ଲ ଭେଳା ଭେଳା ହୋଇ ଜମିଲେ । ରାସ୍ତାରେ ସେ ଗ୍ଲେ ଆଉ ତା ପଛେ ପଛେ କୁକୁର ପଟୁଆର ଚାଲିଥାଏ । ତା ଆସ୍ଥାନରେ ସେ ଶୁଏ; ଆଉ ବେଢ଼ି ଶୁଅନ୍ତି ତା ଚାରିପାଖେ ଗାଁର ଅନ୍ୟ କୁକୁରମାନେ । ସମସ୍ତେ ଆଁ ଟେ ଲେଖାଏଁ କରି ଜିଭ କାଢ଼ି ପାଟିରୁ ନାଳ ବୁହାନ୍ତି । ଚାଳଘର ଗୁରୁଙ୍କର ଅନ୍ତେବାସୀଙ୍କୁ ପଢ଼ିଲେ ପଢ଼ିଲେ ଏହା ଏକ ବିଚିତ୍ର ଦୃଶ୍ୟ ପରି ବୋଧ ହେଉଥାଏ ।

କ୍ରମେ କ୍ରମେ କୁକୁରଙ୍କ ଦୌରାତ୍ମ୍ୟ ବଢ଼ିଲା । ସେମାନେ ବାଡ଼ ଭାଙ୍ଗିଲେ । ଦଉଡ଼ାଦଉଡ଼ି କରି ମୂଲ୍ୟବାନ ଗଛ ନଷ୍ଟ କଲେ । ଗଛମୂଳ ତାଡ଼ି ଅସନା କଲେ । ନିର୍ମଳ ଉଦ୍ୟାନଟିକୁ ମଳ ମୂତ୍ର ତ୍ୟାଗ କରି ଆବର୍ଜ୍ଜନାମୟ କଲେ । ମାଳୀ ଉତ୍ତ୍ୟକ୍ତ ହେଲା । ବିନ ରାତି ସମ୍ମିଳିତ ଉଡ଼ ଗୁଡ଼ ଲୋକଙ୍କ ନିଦ୍ରାଭଙ୍ଗର ଏମାନେ କାରଣ ହେଲେ । ଶତଚେଷ୍ଟା କରି ଏ କୁକୁର ଦଳଙ୍କୁ ହଟାଇ ପାରିଲେନି କେହି ଜଣେ । ରାତିରେ ଉଡ଼ ଗୁଡ଼ ଶାନ୍ତି ଭଙ୍ଗ ସାଙ୍ଗକୁ ଦିନରେ ଘରି ଘରି ପଶି ଏମାନେ ଖାଦ୍ୟ ପଦାର୍ଥ ଲୁଟି କଲେ । ପିଲେ କୁକୁରଙ୍କ ଭୟରେ ଦାଣ୍ଡରେ ଖେଳାଖେଳି ବନ୍ଦ କରି ଦେଲେ । ଘରଣୀଏ ଦୁଆର ମେଲାଇବାକୁ ଡରିଲେ । ଲୋକଙ୍କର କୁକୁରଟି ପ୍ରତି ଯେଉଁ ପରିମାଣରେ ଅଶ୍ରଦ୍ଧା ଜନ୍ମିଲା ସେହି ପରିମାଣରେ ଜଲାଲର ତା ପ୍ରତି ପ୍ରୀତି ଅଧିକ ଜନ୍ମିଲା । ଜଲାଲ ତାର ନାମ ରଖିଥାଏ "ବାଘା" । ସେ କହେ ବାଘାର ମଣିଷପରି ବୁଦ୍ଧି; କଥା ସିନା କହି ପାରୁନି ।

ବାଘାଟି ବଡ଼ ବଳୁଆ ଓ ସୁନ୍ଦର ହୋଇ ଉଠିଲା । ଦିନେ ଜଲାଲ ଗଡ଼କୁ ଗଲା । ତାର ପ୍ରିୟ ବଳଦ ଦୁଇଟିଙ୍କ ବେକକୁ ହଳେ ଘୁଙ୍ଗୁର କିଣିଲା । ବାଘାପାଇଁ ବି ଘୁଙ୍ଗୁର ଆଣିଥିଲା, ତାର ଗଳାରେ ଗଳାଇଦେଲା ।

ମାଳୀ ତ ବାଘା ବିରୁଦ୍ଧରେ ନିତି ମାଲିକଙ୍କୁ ଫେରାଦ ହେଉଥାଏ । ଏବେ ତା ସହିତ ମିଶିଗଲା ପୂଜାରୀ । କହିଲା—ଆଜ୍ଞା ଏଇ ବାଘାଟା ସରଦାର ହୋଇ ଗାଁ ସାକର ବୁଲା କୁକୁରଙ୍କୁ ଡାକି ଆଣୁଛି । ଘରେ ପଶି ସବୁ ଖାଉଛନ୍ତି, ଏଙ୍କୁ ସମ୍ଭାଳି ହେଉନି । ଏଥିରେ ମାଲିକ ବିରକ୍ତ ହୋଇ ଉଠିଲେ । ବାଘାକୁ ବିଦା କରି ଦେବାକୁ ସେ ହୁକୁମ ଦେଲେ । ଜଲାଲ ବିଚରା ଘର ଘର ବୁଲି ତା'କୁକୁରଟି ପାଇଁ ଠାବ ଖୋଜିଲା, ସମସ୍ତେ ମନା କରିଦେଲେ । ଗାଁରେ କାହାଘରେ ବିଚରା ଲୁଚିଗଲେ ସେ ତାକୁ ଦେଖି-ପାରନ୍ତା । ମାତ୍ର ହେଲା ନାହିଁ । ଟରେ ଡଙ୍ଗାରେ ନେଇ ନଈ ଆର ପାରିରେ ସେ ବାଘାକୁ ଛାଡ଼ି ଦେଇଆସିଲା । ମାତ୍ର ବାଘା କି ଜଲାଲକୁ ଛାଡ଼ି ରହିପାରେ ? ନଈ ପହଁରି ସେ ହାଜର ହେଲା ଜଲାଲ ପାଖରେ । ଆଉ ଥରେ ନଈ ଆର ପାଖକୁ ଯାଇ ଜଲାଲ ବସ୍‌ବାଲାଙ୍କୁ ପଇସା ଦେଇ ତାକୁ ବାଙ୍କି-ଚର୍ଚ୍ଚିକାକୁ ପଠାଇ ଦେଲା । ଦୁଇ ତିନି ଦିନ ପରେ ସିଏ ପୁଣି ଚାଲି ଚାଲି ଜଲାଲ ପାଖକୁ ଲେଉଟିଲା ।

ବାବୁଙ୍କ ଝିଅ ବାହାଘର । କୁକୁରଗୁଡ଼ାକ ଜମା ହୋଇ ଥାଆନ୍ତି । ମାଂସ କଟାକଟି ଚାଲିଥାଏ । କଣ ହେଲା କେଜାଣି ସବୁତକ କୁକୁର ମିଶିଗଲେ । କଟାଳି ବିଚାରା ନିଷ୍ଫଳ ପ୍ରତିବାଦ ଜଣାଇଲା । ବିଦ୍ରୋହର ମୁକାବିଲା କରି ପାରିଲାନି । ସବୁତକ ମାଂସ କୁକୁର ପଲଙ୍କ ପେଟକୁ ଗଲା । ବାବୁ ସାହେବ ଶୁଣିଲେ । ମୁଣ୍ଡ ତାଙ୍କର ଗରମ ହୋଇଗଲା, ପିତ ଚଢ଼ି ଉଠିଲା । ବଜ୍ରଗମ୍ଭୀର ସ୍ୱରରେ ଗର୍ଜି ଉଠିଲେ ସିଏ । ଜଲାଲକୁ ଡକରା ପଡ଼ିଲା । ଅପରାଧୀଟି ପରି ଜଲାଲ ଆସି ପହଞ୍ଚିଲା । ବାବୁ କହିଲେ—ଜଲାଲ, 'କୁକୁର' ନାହିଁ ତ 'ଚାକର'—ଯିଏ ହେଲେ ଜଣେ ଏଠି ରହିବ ।

ଜଲାଲ ବିଚାରା ଫେରିଲା ତା ଘରକୁ । ସେଦିନ ଭାତ ଖାଇଲା ନାହିଁ । ନିଦ ହେଲାନି । ରାତିଟା ସାରା ଛଟପଟ ହେଲା । କୁକୁରଟାର ସହିତ କେତେ ଦରଦ, କେତେ ସହାନୁଭୂତି । ଇତର ଜୀବ ହୋଇ ବି, ସେ ଉପବାସରେ ଶୋଇ ରହିଲା । ଜଲାଲ ଭାବି ଲାଗିଲା; ଅନନ୍ତ ମହାସାଗରର ଅସରନ୍ତି ଢେଉ ପରି ତାର ଚିନ୍ତା—ଢେଉ ତାର ବିରାଟ ହୃଦୟରେ ଖେଳି ଲାଗିଲା । ସ୍ଥିର କଲା ବାଘାକୁ ନେଇ ଯାଇ ଅନ୍ୟତ୍ର ଚାଲିଯିବ । ପୁଣି

ଖାଇବାକୁ, ତାକୁ ପିନା ପାଇଁ ମିଳିବ, ଏ ପ୍ରିୟ ଜୀବଟିକୁ ଠାବ ମିଳିବାରେ ନିଶ୍ଚିତତା କିଏ ସେ ବା ଦେବ, ଆଉ ଏଠା କଥା । ବାବୁ ପିନା ବଦରାଗୀ, ବାବୁଆଣୀ ସାକ୍ଷାତ ଲକ୍ଷ୍ମୀ ଠାକୁରାଣୀ । ଦୟାର ଆକର, ମମତାର ଭଣ୍ଡାର । ଛୁଆ ପିଲା ହେଲେ, ନିଜେ ଜନ୍ମିତା ମାତା ପରି ପାଖେ ପାଖେ ବସିବେ । ଘରୁ ବାଲି, ଶାଗୁ ଆଣି ପିଆଇବେ । ନିଜ ପିଲାଙ୍କୁ ଦେଲାପରି ଔଷଧ ପିଆଇବେ । ବାବୁ ବିରକ୍ତ ହେଲେ ବୁଝାଇ ଶୁଝାଇ ସାନ୍ତ୍ୱନା ଦେବେ । ନାଁ, ଏ ନଉକ୍ଷୁଣା କୁକୁର ଲାଗି ମାଆଙ୍କର ଏତେ ସ୍ନେହ ଏତେ ଶରଧା ଗୁଡ଼ କୁଆଡ଼େ ହେଲେ ଯାଇ ପାରିବ ନାହିଁ । ଏଇଟା ତାର ଖାଉନ୍ଦ ଆଉ ତା ମଝିରେ ଗୋଟାଏ କଣ୍ଟାବାଡ଼ ହୋଇ ଛିଡ଼ା ହେଲା । ନାଁ, ତାକୁଇ ଘୁଞ୍ଚିବାକୁ ପଡ଼ିବ ।

ସତ ପାହୁ ନ ପାହୁଣୁ କୁକୁରଟାକୁ ଗୋଟାଏ ଦଉଡ଼ାରେ ବାନ୍ଧିଲା । ଭିଡ଼ ଭିଡ଼ ତାକୁ ନଈକୂଳକୁ ନେଲା । ନଈ କୂଳରେ ଟିକିଏ ବସିଲା । ନଦୀର ଗଭୀର ଜଳକୁ ତୀକ୍ଷ୍ଣ ଚକ୍ଷୁରେ ଚାହିଁଲା । କୁକୁରଟି ସଙ୍କୁଚିତ ହୋଇ ଖାଉନ୍ଦ ପାଦକୁ ବଡ଼ ଶରଧାରେ ଚାଟିଲା । ସତେ ଅବା ଜଲାଲର ଅସ୍ୱାଭାବିକ ବ୍ୟବହାରର ଏ ଗୋଟିଏ ଅକୁହା ପ୍ରତିବାଦ । ଜଲାଲ କାନ୍ଦି ଉଠିଲା, ବାଘାକୁ ଘନ ଘନ ଚୁମାଦେଲା । କୁଣ୍ଢାଇ ପକାଇ ପିଲାକୁ ତାର ଜନ୍ମଦାତ୍ରୀ କୋଡ଼ରେ ଶୁଆଇଲାପରି, ଶୁଆଇ କେତେ ଗେଲ କଲା ।

ତାପରେ ଗୋଟାଏ ଓଜନିଆ ପଥର ଆଣିଲା । ବାଘା ବେକରେ ଲାଗିଥିବା ଦଉଡ଼ାରେ ବାନ୍ଧିଲା । ତାକୁ କୁଣ୍ଢାଇ ଗେଲ କଲା, କୁକୁରଟା ବି ପ୍ରତି ବଦଳରେ ଅଶେଷ ସ୍ନେହ ଜଣାଇଲା 'କୁଁ' 'କୁଁ' ଶବ୍ଦ ମାଧ୍ୟମରେ । ଥରକୁ ଥର ଜଲାଲ ତାକୁ ଠେଲିଲା ପାଣିରେ ପକାଇଦେବାକୁ । ମାତ୍ର ତା ହାତ, ତା ମନ ତା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରୁଥାଆନ୍ତି । ଶକ୍ତିକୁ ସେ ଶେଷରେ ପଥର କଲା । ଶ୍ୱାସ ରୁଦ୍ଧ ହୋଇ ଆସୁଥାଏ । ଶେଷରେ 'ବାଘା'କୁ ଜଳର ଅତଳ ଗର୍ଭରେ ପକାଇଦେଲା । ବିଚରା କୁକୁରଟା ପ୍ରବଳ ଉଦ୍ୟମ କରୁଥାଏ ପହଁରି ପଳାଇ ଆସିବାକୁ । ମାତ୍ର ପଥର ତାକୁ ତଳକୁ ଟାଣୁଥାଏ । 'ବାଘା' ତାର ପ୍ରଭୁ ଜଲାଲ ପ୍ରତି ଅତି କରୁଣ ଦୃଷ୍ଟିପାତ କଲା । ସତେ ଅବା ବୁଡ଼ିଗଲା ଛୁଆ ବୁଡ଼ି ମରିବା ପୂର୍ବରୁ ପିତା ନିକଟରେ ଶେଷ ଅଳି ଜଣାଉଅଛି । କୁକୁରଟିର ସଲିଳସମାଧି ହୋଇଗଲା ।

ବଡ଼ ଦୁଃଖରେ ଫେରିଲା ଜଲ୍ଲ । ଗୋଟିଏ କଥା ତା ମନରେ ବାରମ୍ବାର ଆଘାତ ଜନ୍ମାଇଲା—ବିଚରା ପ୍ରଭୁଭକ୍ତ ବାଘାଟା 'ତା ସମ୍ବନ୍ଧରେ କି ଧାରଣା କରିଥିବ ।

ଏହା ପରେ ବିଚରା ଜଲ୍ଲ ପାଗଳ ପରି ହୋଇଗଲା । ମାସୁଟିଏ ବିଛଣା ଧରିଲା ସେ । ରୋଗୀ ପରି ଶୋଇ ରହିଲା, 'ଶୟନେ' 'ସ୍ୱପନେ' କୁକୁରଟି ତା ଆଖି ଆଗରେ ନାଚି ଉଠିଲା । ହାତଟିକୁ ସତେ ଅବା ବାଘା ତାର ଗୁଣ୍ଡି ପକାଉଛି । ଦେହରେ ଘଷି ହୋଇ ଯାଉଛି । 'କୁଁ' 'କୁଁ' କରି ଅଳି କରୁଛି, ଅଭିମାନରେ ଏଣ୍ଡେ ମୁହଁ କରୁଛି ସେ ଜୀବଟି ।

ଖାଉନ୍ଦାଣୀ ଆସନ୍ତି । ବହୁତ ବୁଝାନ୍ତି । ପିଲାଟି ପରି ସେ କଇଁ କଇଁ ହୋଇ କାନ୍ଦେ । କହେ—ମୁଁ କଣ କଲି । ମୋର ସ୍ୱାର୍ଥ ପାଇଁ ଗୋଟାଏ ନିରୀହ ଜୀବକୁ ହତ୍ୟା କଲି । ବିଷ ଗଛ ନିଜ ହାତରେ ଲଗାଇ, ହାଣିବା ମନା । ମୁଁ ତାକୁ ଆଣିଲି, ପାଳିଲି, ବଢ଼ାଇଲି ଆଉ ନିଜ ହାତରେ ମାରିଲି । ମାଆ, ମତେ ଆଲ୍ଲା ମୋଟେ କ୍ଷମା ଦେବେ ନାହିଁ ।

ଖାଉନ୍ଦ ଡାକ୍ତର ଡକାଇଲେ । କ୍ରମେ କ୍ରମେ ଜଲ୍ଲ ଟିକିଏ ଭଲ ହେଲା । ଖାଉନ୍ଦ, ଖାଉନ୍ଦାଣୀ ତାକୁ ସାଙ୍ଗରେ ଧରି ନଗରକୁ ବାହାରିଲେ । ଦୃଶ୍ୟ ଦେଖା ହେବ । ମନ ବଦଳିବ । ସେଠି ମହାନଦୀରେ ଜଲ୍ଲ ଗାଧୋଇଲା । ତା' ଗୋଡ଼ରେ କଣଟାଏ ଲାଗିଲା । ବୁଡ଼ିକରି ସେ ବସ୍ତୁଟିକୁ ସେ ଘେନି ଆଣିଲା । ନଈ କୂଳରେ ଆଣି ସେ ଜିନିଷଟାକୁ ପକାଇଦେଲା ଜଲ୍ଲ । ସେ ଦେଖିଲା ଗୋଟାଏ ଜୀବର ଅସ୍ଥିକଙ୍କାଳ । ଦଉଡ଼ାରେ ବନ୍ଧା ହୋଇଛି ପଥରଟାଏ । ଆରେ ଏ ତ ତାରି କଣା ଘୁଙ୍ଗୁର ମାଳ । ଜଲ୍ଲ ଅନାଇ ରହିଲା । ତା ଆଖି ଆଗରେ 'ବାଘା'ର ସମଗ୍ର ଅତୀତ ନାଚି ଉଠିଲା । ତା ମନ ପୁଣି ଚହଲିଗଲା । ସେ ବଡ଼ ରଡ଼ି ଛାଡ଼ି ମସ୍ତବଡ଼ 'ଚିତ୍କାର' କଲା ।

ଜଲ୍ଲ ସିନା 'ବାଘାକୁ' ଛାଡ଼ିଥିଲା, ବାଘା କିନ୍ତୁ ତାକୁ ମୃତ୍ୟୁ ପରେ ବି ଛାଡ଼ି ପାରୁନି । ଜଲ୍ଲ ଯେ ତାର ଗତି ଓ ମୁକ୍ତିଦାତା ! ସେଠୁ ଦଉଡ଼ିଲା ଜଲାଲ । ଏକମୁହାଁ ହୋଇ ଦଉଡ଼ିଲା । ଏ ଜଗତରୁ ଅନ୍ୟ ଜଗତକୁ ତା ମନ ଧାଇଁଲା । ସେ ଜଗତରେ ସ୍ୱାର୍ଥପର ଦୁନିଆର ମଣିଷ ନାହାନ୍ତି ।

ନାହାନ୍ତି ନରରୂପୀ ରାକ୍ଷସ । ଏମାନେ ତ ନିଜର ସ୍ୱାର୍ଥପାଇଁ ସବୁ କିଛି କରିପାରନ୍ତି । ବାବୁ, ବାବୁଆଣୀ ଜଲାଲକୁ ଡାକିଲେ । ଜଲାଲର ନାମ କେବଳ ପ୍ରତିଧ୍ୱନିତ ହେଲା ।

ଜଲାଲ ଚାଲିଛି । ଚାଲିଛି ଝାଳନାଳ ହୋଇ । ଏ ଜଗତରେ ତାର ହେଇ କେହି ନାହିଁ । ଆଜି ସେ ବିଶ୍ୱାସଘାତକ । ସେ ଚାହେଁ ତାର ସ୍ୱାତନ୍ତ୍ର୍ୟ ରକ୍ଷା କରିବାକୁ । ତା ମନ ବଦଳି ଯାଇଛି, ସେ 'ପାଗଳ' ।



# ଦୋକାନୀ ନଥାଇ ....... ଦୋକାନ

ଡ: ଗୋକୁଳାନନ୍ଦ ମହାପାତ୍ର



ଦାଦାଙ୍କ ସାଙ୍ଗ ନରେଶବାବୁ ଆମେରିକାରୁ କଟକ ଆସୁଥାନ୍ତି । ଆମ ଘରେ ରହିବା ପାଇଁ ଦାଦା ତାଙ୍କୁ ଅନୁରୋଧ କରିଥାନ୍ତି । ବମ୍ବେରୁ ସେ ଚିଠି ଲେଖିଥାନ୍ତି ଯେ ଆସନ୍ତା ସୋମବାର ଦିନ ସକାଳେ ସେ କଟକ ଷ୍ଟେସନ୍‌ରେ ପହଞ୍ଚିବେ । ଦାଦା ଆଉ ମୁଁ ତାଙ୍କୁ ଷ୍ଟେସନ୍‌ରୁ ପାଛୋଟି ଆଣିବାକୁ ଯିବୁ ବୋଲି ଠିକ୍ ହୋଇଥାଏ । ନରେଶବାବୁ ଆମେରିକାରେ ଦୁଇ ବର୍ଷରୁ ଊର୍ଦ୍ଧ୍ୱ କାଳ ଥିଲେ । ସେ ସେଠାରେ ଇଞ୍ଜିନିୟରିଂରେ କ'ଣ ଗୋଟାଏ ଟ୍ରେନିଂ ନେଉଥିଲେ । ଆମେରିକାରେ ଥିଲାବେଳେ ସେ ଦାଦାଙ୍କ ପାଖକୁ ଅନେକ ଚିଠି ଲେଖନ୍ତି । ଦାଦା ମଧ୍ୟ ସେହିମତ ତାଙ୍କ ପାଖକୁ ଚିଠି ଦିଅନ୍ତି । ଦାଦା ଦିନେ କହୁଥିଲେ ଯେ ନରେଶବାବୁ ତାଙ୍କ ନିକଟକୁ ଚିଠି ଲେଖିଛନ୍ତି—ଆମେରିକାରେ ଦୋକାନୀ ନ ଥାଇ ଦୋକାନ ଅଛି । ଦୋକାନରେ ସବୁ ପ୍ରକାର ଜିନିଷ ଅଛି, ଲୋକେ କିଣୁଛନ୍ତି; କିନ୍ତୁ ଜିନିଷ ଦେବା ପାଇଁ କି ପଇସା ନେବା ପାଇଁ କେହି ଲୋକ ନାହିଁ ।

ମୁଁ ଦିନେ ବୋଉକୁ ଏହି ଦୋକାଣୀ ନ ଥାଇ ଦୋକାନ କଥା ପଚାରିଲି । ବୋଉ କହିଲା, "ମୁଁ କ'ଣ ବିଲାତ ଆମେରିକା ଯାଇଛି ଯେ ତୋତେ ସେ ସବୁ ବୁଝାଇ କହିବ ? ତେବେ ଦିନ ତଳେ ତୋ ବାପା ଯେତେବେଳେ ବିଲାତ ଯାଇଥିଲେ, ସେ ଆସି କହିଲେ ଯେ ବିଲାତରେ ବିଭିନ୍ନ ଜାଗାରେ ଖବର କାଗଜ ସବୁ ଥୁଆ ହୋଇଥାଏ । ଯା'ର ଯେଉଁ କାଗଜ ପଢ଼ିବାକୁ ଇଚ୍ଛା ସେ ସେଇ କାଗଜ ଆଣି କାଗଜର ମୂଲ୍ୟ ସେହିଠାରେ ଥିବା ଏକ ବାକ୍ସରେ ଗଳାଇ ପକାଏ । କାଗଜକୁ କାଗଜ ବିକ୍ରୀ ହେଲା । ବିକ୍ରୀ କରିବା ପାଇଁ ବିକାଳିବାଲାର ଦରକାର ନାହିଁ । ଆମେରିକାର ସେହି ଦୋକାଣୀ ନ ଥାଇ ଦୋକାନ ସେମିତି କିଛି ଗୋଟାଏ ହୋଇଥିବ ।"

ବୋଉ ସିନା ଏଇ କଥା କହିଦେଲେ, କିନ୍ତୁ ମୋ ମନ ମାନିଲା ନାହିଁ । ମୁଁ ଭାବିଲି ଦୋକାଣୀ ନ ଥାଇ ଦୋକାନ ଆଉ ଗୋଟିଏ କିଛି ବଡ଼ ଜିନିଷ ହୋଇଥିବ । ଦାଦାଙ୍କୁ ଦିନେ ପଚାରିଲି, ସେ ଠିକ୍ କରି କହି-ପାରିଲେନି । କହିଲେ, ନରେଶବାବୁ ତ ଆମେରିକାରୁ ଆସୁଛନ୍ତି । ତାଙ୍କୁ ପଚାରିବୁ, ସେ ତୋତେ ବୁଝାଇ କହିଦେବେ ।

× × ×

ମନେ ମନେ ଭାବିଲି, ସତ କଥା । ନରେଶବାବୁ ତ ଏମିତି ଦୋକାନ ନିଜ ଆଖିରେ ନିଶ୍ଚୟ ଦେଖି ଆସିଥିବେ । ସେ ଠିକ୍ ବୁଝାଇ ଦେଇପାରିବେ ।

ନରେଶବାବୁ ଆମ ଘରେ ପହଞ୍ଚିବା ପରଠାରୁ ତାଙ୍କୁ ଟିକିଏ ଫୁରୁସତ୍ ନଥାଏ । କେତେ ଲୋକ ଯେ ତାଙ୍କ ସହିତ ସାକ୍ଷାତ କରିବାକୁ ଆସୁଥାନ୍ତି, ତା'ର କଳନା ନାହିଁ । କେତେ ସଙ୍ଗସାଥି, କେତେ ବନ୍ଧୁ-ବାନ୍ଧବ, କେତେ ଶୁଭକାଂକ୍ଷୀ ଆସୁଥାନ୍ତି, ଯାଉଥାନ୍ତି । ତାଙ୍କୁ ଫୁରୁସତ୍ କାହିଁ ଯେ ମୁଁ କିଛି ପଚାରନ୍ତିବ ? ମଧ୍ୟାହ୍ନ ଭୋଜନ ପରେ ସେ ଆମ ଡ୍ରଇଁରୁମ୍ ସେ ପାଖରେ ବସିଥାନ୍ତି, ମୁଁ ଯାଇ ତାଙ୍କ ପାଖରେ ବସିଲି । ମୋତେ ଦେଖି ସଙ୍ଗେ ସଙ୍ଗେ ସେ ସୁଟ୍‌କେଶ ଖୋଲି କେତେଗୁଡ଼ିଏ ଆମେରିକାର ଖେଳନା ଦେଲେ । ସେଥିମଧ୍ୟରୁ ଗୋଟିଏ ବାଇନୋକୁଲର୍—ସେଥିରେ ଦେଖିଲେ ଦୂର ଜିନିଷ ପାଖରେ ଦିଶେ, ଓଲଟାଇ ଦେଖିଲେ ପାଖ ଜିନିଷ

ବ ଦୂରରେ ଥିବା ଭଳ ଦିଶିବ । ତା' ସହିତ ଗୋଟିଏ ଭିଉମାଷ୍ଟର ଓ ଅନେକଗୁଡ଼ିଏ ଆମେରିକାର ଦୃଶ୍ୟ ଥିବା ଚକଟ । କିନ୍ତୁ, ମୋର ତ ମନ ସେଥିରେ ନଥାଏ । ଦୋକାନୀ ନଥିବା ଦୋକାନ କଥା କେମିତି ଶୁଣିବି, ସେଇ ମୋର ଇଚ୍ଛା । ସେଗୁଡ଼ିକୁ ନେଇ ଘରେ ମେଜ ପାଖରେ ଥୋଇଦେଇ ଆସିଲା ବେଳକୁ ଦାଦା ଆସି ନରେଶବାବୁଙ୍କ ପାଖରେ ବସି ସାରିଲେଣି । ମୋତେ ଦେଖି ଦାଦା ନରେଶବାବୁଙ୍କୁ କହିଲେ, "ହଇହୋ ନରେଶ, ତୁମେ ଅଚ୍ଛା ଚିଠି ଲେଖିଲ ମୋ ପାଖକୁ, ଦୋକାନୀ ନଥାଇ ଦୋକାନ କଥା । ସେ ବିଷୟରେ ଟିକିଏ ବୁଝାଇ ଦେଲ ମଣ୍ଟୁକୁ । ତୁମ ଚିଠି ପାଇଲା ଦିନୁ ସେ ଆମ ସମସ୍ତଙ୍କୁ ଅଥୟ କରୁଛି ।"

ଦାଦାଙ୍କ କଥା ଶୁଣି ନରେଶବାବୁ ହସିଲେ, "ଏଥିରେ ଆଉ ବୁଝିବାର କ'ଣ ଅଛି, ଦୋକାନୀ ନାହିଁ, ଦୋକାନୀ ଜାଗାରେ ଯନ୍ତ୍ରଟିଏ ବସି ବିକାବିକି କରୁଛି ।"

ନରେଶବାବୁଙ୍କ କଥା ମୋତେ ଆହୁରି ଆଶ୍ଚର୍ଯ୍ୟ ଲାଗିଲା । ପଚାରିଲି, "କ'ଣ ସତରେ ମଣିଷଟାଏ ନ ବସି ଯନ୍ତ୍ର ମଣିଷଟାଏ ବସି ବିକାବିକି କରୁଛି ?"

"ନାଁ ରେ, ତା ନୁହେଁ ମଣ୍ଟୁ । ବିଭିନ୍ନ ଯନ୍ତ୍ର ଭିତରେ ନାନା ପ୍ରକାର ଜିନିଷ ଥୁଆ ହୋଇଛି । ସବୁ ଜିନିଷର ଦାମ୍ ଲେଖା ହୋଇଛି । ତୁମର ଯେଉଁ ଜିନିଷ ଦରକାର, ସେତିକି ପଇସା ପକାଇ ଯନ୍ତ୍ରର ସୁଇଚ୍ ଟିପିଦେଲେ ଜିନିଷଟି ମନକୁ ମନ ବାହାରି ଆସିବ ।"

"ଆପଣ କ'ଣ ଏମିତି ଯନ୍ତ୍ର ଦେଖିଛନ୍ତି ?"

"ଆରେ, ଦେଖିଛି କଅଣ ? ସେହି ଯନ୍ତ୍ରରୁ ଜିନିଷ କିଣିଛି । ଆମ କଲେଜରେ ଏମିତି କେତେଟା ଯନ୍ତ୍ର ବସିଛି । ଗୋଟିଏ ଯନ୍ତ୍ରରେ ଚା, କଫି, କୋକ୍ ଆଦିର ବନ୍ଦୋବସ୍ତ ହୋଇଛି । ତୁମେ ଚା ଖାଇବ, ଦୁଧପକା ଖାଇବ କି ଦୁଧ ନ ପକା ଖାଇବ, ଚିନି ମିଶାଇ ଖାଇବ କି ଚିନି ନ ମିଶାଇ ଖାଇବ, ତୁମର ଯା' ଦରକାର, ଗୋଟାଏ କଣ୍ଟାକୁ ସେହି ଲେଖା ପାଖକୁ ଘୂରାଇ ଆବଶ୍ୟକୀୟ ପଇସା ଯନ୍ତ୍ରରେ ପକାଇ ସୁଇଚ୍ ଟିପିଦିଅ । ମାତ୍ର କେଇ ସେକେଣ୍ଡ ପରେ ସେହି ଯନ୍ତ୍ର ଭିତରୁ ଗୋଟିଏ କାଗଜ ଗିଲାସ ମନକୁ ମନ

ବାହାର ଆସି ଠିଆ ହୋଇଯିବ । ସେଥିରେ ଆବଶ୍ୟକୀୟ ପରିମାଣ ଗ୍ରୁ କ କଫି ତୁମ ପସନ୍ଦ ମୁତାବକ ଢାଳ ହୋଇଯିବ । ତା'ପରେ, ତୁମେ ଆଣି ପିଇବ, ଠିକ୍ ତୁମ ପସନ୍ଦ ଅନୁସାରେ ତିଆରି ହୋଇଛି, ଟକ୍‌ଟକ୍ ଗରମ ହୋଇଛି । ତୁମର ଯଦି ଟିକିଏ ବେଶି ଦୁଧ କ ବେଶି ଚିନି ଦରକାର,



ତେବେ ସେହି ଅନୁସାରେ ବଟନ ଦେଲେ ବାହାରି ଆସିବ । ଯେତିକି ପଇସା ଦେଲେ ବାହାରିବା କଥା ତହିଁରୁ ଯଦି କମ୍ କ ବେଶି ପକାଇବ, ତେବେ କିଛି ବାହାରିବ ନାହିଁ । ଓଲଟି ପଇସା ଫେରସ୍ତ ଆସିବ ।''

''ଯଦି ଆପଣଙ୍କ ପାଖରେ ରେଜା ନାହିଁ, ତେବେ କ'ଣ କରିବେ ?''

''ଯେଉଁଠି ଏହି ଯନ୍ତ୍ର ସବୁ ବସିଥାଏ, ସେଠି ଟଙ୍କା ଭଙ୍ଗାଇବା ପାଇଁ ଆଉ ଏକ ଯନ୍ତ୍ର ବସିଛି । ସେହି ଯନ୍ତ୍ରରେ ଟଙ୍କା ପକାଇଲେ, ଠିକ୍ ରେଜା ମନକୁ ମନ ବାହାରି ଆସିବ । ରେଜା ନେଇ ଯନ୍ତ୍ରରେ ପକାଇ ଆବଶ୍ୟକୀୟ ଜିନିଷ ଖରିଦ୍ କରିହେବ । କିଛି ଅସୁବିଧା ହେବନି ।''

"ଆଜି ସବୁ କି କି ଜିନିଷ ସେଇ ଯନ୍ତ୍ରରେ ବିକ୍ରୀ ହୁଏ ନରେଶ ବାବୁ ?"

"କୋକାକୋଲା, ପେପ୍‌ସିକୋଲା, କମଳାରସ, ଅଙ୍ଗୁରରସ, ସେଓରସ, ସପୁରୀରସ, ଲେମୋନେଡ୍, ସୋଡ଼ା ଆଦି ଯାବତୀୟ ଥଣ୍ଡା ପାନୀୟ ଆଜି ଏକ ଯନ୍ତ୍ରରେ ବିକା ହେଉଥାଏ । ସେହି ଯନ୍ତ୍ରରେ ଆବଶ୍ୟକୀୟ ପ୍ରକାର ଯେଉଁ ପାନୀୟ ଦରକାର, ସୁଇଚ୍ ଟିପିଲେ ସେହି ପାନୀୟ ବାହାରି ଆସିବ । ଏହି ପାନୀୟ ଏତେ ଥଣ୍ଡା ଯେ ପାଟି ଶୀତେଇ ଉଠିବ । ଆଜିକାଲି ଏ ଯନ୍ତ୍ରଗୁଡ଼ିକ ରାସ୍ତାଘାଟ ସବୁଆଡ଼େ ଥୁଆହୋଇଥାଏ । ଯେଉଁଠି ଇଚ୍ଛା ହେଲା, ପଇସା ପକାଇ ଥଣ୍ଡା ପାନୀୟ ପିଇଲ । କି ତୃପ୍ତି !"

"ମିଠେଇ, କେକ୍, ବିସ୍କୁଟ୍ ଆଦି ପାଇଁ ସେମିତି ଯନ୍ତ୍ର ଅଛି ନା ନରେଶବାବୁ ?"

"ହଁ, ସେହି ସବୁ ଯନ୍ତ୍ରରେ ବିଭିନ୍ନ ପ୍ରକାର ମିଠେଇ ଅଛି । ମିଠେଇର ନାଁ ସବୁ ଦିଆଯାଇଛି, ଦାମ୍ ବି ଲେଖାଯାଇଛି । ଯେଉଁ ମିଠେଇ ଦରକାର, ପଇସା ପକାଇଲେ ବାହାରିଲା ।"

"ଯାହାକୁ ବେଶି ଭୋକ କରୁଥିବ, ତା ପାଇଁ ଭୋଜନର କେଉଁଠି କିଛି ବନ୍ଦୋବସ୍ତ ଥାଏ ନା ଏହି ଯନ୍ତ୍ର ଜରିଆରେ ?"

"ହଁ, ତା ବା ନ ଥିବ କାହିଁକି ? ବଡ଼ ବଡ଼ ରେଳଷ୍ଟେସନ୍, ବସ୍‌ଷ୍ଟାଣ୍ଡ ଆଦିରେ ଖୁବ୍ ବଡ଼ ବଡ଼ ଯନ୍ତ୍ର ଥୁଆ ହୋଇଛି । ପଇସା ପକାଇଲେ ମଧ୍ୟାହ୍ନ ଭୋଜନ କି ରାତି ଭୋଜନ ସବୁ ବାହାରି ଆସିବ । ବିଭିନ୍ନ ପ୍ରକାର ଖାଦ୍ୟ ଥିବା ଭୋଜନମାନଙ୍କର ତାଲିକା ଅଛି । ଯେଉଁ ଭୋଜନ ତୁମକୁ ଦରକାର ପଇସା ପକାଇ ସୁଇଚ୍ ଟିପିଲେ ବାହାରି ଆସିଲା ।"

ଖାଇ ସାରିଲେ ସେଇ ବାସନକୁସନ କିଏ ନେବ ? ସେଗୁଡ଼ିକ ଧୂଆ ହେବ କେମିତି ?"

"ଆରେ, ସେ ସବୁ ଖାଦ୍ୟ କାଗଜ ତିଆରି ଥାଳୀ, ଡାଟିଆରେ ଅସିଥାଏ । ଖାଇସାରି ଫୋପାଡ଼ି ଦେବ । ଆଉ ଯେଉଁ ଜାଗାରେ ଚିନାମାଟି ବାସନ ବ୍ୟବହୃତ ହୁଏ, ସେଠାରେ ଖାଇସାରି ଆଉ ଗୋଟିଏ ଯନ୍ତ୍ରରେ

ଥୋଇଦେବ । ସେଗୁଡ଼ିକ ଧୁଆ ହୋଇ, ବିଶୋଧିତ ହୋଇ ଏବଂ ଶୁଖା ହୋଇ ମନକୁ ମନ ଖାଦ୍ୟ ଯୋଗାଉଥିବା ଯନ୍ତ୍ର ପାଖକୁ ଚାଲିଯିବ ।"

"ସିଗାରେଟ୍ ଆଦି ପାଇଁ—"

"ହଁ, ସେମିତି ଯନ୍ତ୍ରମାନ ବସିଛି । ସବୁ ପ୍ରକାର ସିଗାରେଟ୍‌ର ଚିହ୍ନ ଅଛି । ଯେଉଁଟା ଦରକାର, ପଇସା ପକାଇ ସେଇଟାର ସୁଇଚ୍ ଟିପିଲେ ମନକୁମନ ବାହାରି ଆସିବ । ସିଗାରେଟ୍ ସଙ୍ଗତ ଦିଆସିଲି, ବିନା ପଇସାରେ ଆସିବ । ଆମେରିକାରେ ଦିଆସିଲି ବିକ୍ରୟ ହୁଏ ନାହିଁ । ଏହା ଖାଲି ଲୋକମାନଙ୍କୁ ବଣ୍ଟାଯାଏ ।"

"ଏସବୁ ସବୁ ଯନ୍ତ୍ର କ'ଣ ଆମେରିକାରେ ସବୁଆଡ଼େ ବସିଛି ?"

"ହଁ, ବଡ଼ ବଡ଼ ଛକଜାଗାମାନଙ୍କରେ ଯେଉଁଠି ଲୋକ ଗହଳି ବେଶି, ସେଠି ଏମିତି ଯନ୍ତ୍ର ସବୁ ଦେଖିବ । ବଡ଼ ବଡ଼ ହୋଟେଲ୍, ମାର୍କେଟ୍, ରେଳ ବା ବସ୍ ଷ୍ଟେସନ୍‌ରେ ବିଭିନ୍ନ ପ୍ରକାର ଯନ୍ତ୍ର ସବୁ ଧାଡ଼ି ଧାଡ଼ି ହୋଇ ଏମିତି ଭାବରେ ବସିଛି ଯେ ତମକୁ ଏକ ବିରାଟ ଦୋକାନ ବା ବଜାର ଭଳି ଦିଶିବ । ଶହ ଶହ ଲୋକ ପଇସା ଦେଇ ଜିନିଷ କିଣୁଛନ୍ତି, କିନ୍ତୁ ବିକାଳିବାଲା ଜଣିଏ ସୁଦ୍ଧା ନାହିଁ । ଏଇ ହେଲା ରେ ମଣ୍ଟୁ । ଆମେରିକାରେ ଦୋକାନୀ ନଥାଇ ଦୋକାନ, ବୁଝିଲୁ ?"






କୁନ ଓ ବନ ଦୁଇ ଭଉଣୀ । କୁନ ବଡ଼, ବନ ସାନ । କେବଳ ବର୍ଷେ ଏପାଖ ସେପାଖ । ଦେଖିଲେ ମନେ ହୁଏ ସତେ ଯେମିତି ସେମାନେ ଦୁଇଟି ଜାଆଁଳା ଭଉଣୀ । ଏକା ଉଚ୍ଚା, ଉଓଳ ଡାଉଳ ମୁହଁ, କୁନ୍ଦାଳ କୁନ୍ଦିଲା ଦେହ, ମୁଣ୍ଡବାଳ ଝାମ୍ପୁରୁ ଝାମ୍ପୁରୁ । ଦୁ'ଜଣଙ୍କର ଜାମା ପୋଷାକ ବି ଏକା ପରି, କେବଳ ରଙ୍ଗରେ ଯାହା ଅଲଗା । ଏହାର କାରଣ କୁନ ଟିକିଏ କଳା, କିନ୍ତୁ ବନ ସଫା ଗୋରା ।

କୁନ ବେଳେ ବେଳେ ପଚାରେ "ମାଆ, ଆମ ପାଇଁ ଏକା ରଙ୍ଗର ଜାମା କାହିଁକି ଆଣୁନା ?" ମା ବୁଝାଇ କହନ୍ତି, "ତମ ଦେହର ରଙ୍ଗ ତ ଅଲଗା, ଏକା ରଙ୍ଗର ଜାମା ହେଲେ ସାଜିବ କିପରି ?" ସେମାନେ ବୁଝି ଯାଆନ୍ତି । ତଥାପି ବେଳେ ବେଳେ ଦିହେଁ କଜିଆ କରନ୍ତି । ଦିନେ ଦିନେ ଗୋଟିଏ ଜାମା ପିନ୍ଧିବାକୁ ଦୁ'ଜଣ ଜିଦ୍ କରି ବସନ୍ତି ।

ବିଶେଷ କରି କୁନ ବେଶୀ ଅସ୍ଥିର ହୁଏ । ବିନର ନୀଳ ଫ୍ରକ ପିନ୍ଧିବାକୁ ଜିଦ୍ କରେ । ମାଆ ବୁଝାଇ ବସନ୍ତି, "ମୋ ମାଆଟା ପରା, କଳା ଦେହକୁ ନୀଳ ଫ୍ରକ୍ ଜମା ମାନିବ ନାହିଁ । ସେଥିପାଇଁ ପରା କେତେ ଦୋକାନ ବୁଲି, ତୋ ପାଇଁ ଗୋଲାପି ରଙ୍ଗର କେଡ଼େ ସୁନ୍ଦର ଫ୍ରକ୍ ଆଣିଛୁ ।" ଏଥିରେ କୁନ ମନ କ'ଣ ବୁଝେ ? ସେ ଦେଖିଛୁ ବିନ ନୀଳ ଫ୍ରକ୍ ପିନ୍ଧିଗଲେ ଭାଇ ସଡ଼ଏ ଅନେଇ ରହେ । ଦାଦା କାଖେଇ ପକାଏ । ମଉସା କହନ୍ତି—ବିନ ତ ଝିଅ ନୁହେଁ, ଚମ୍ପା କଢ଼ଟିଏ । ବାପା ବିନ ଜାମାରୁ ଧୂଳି ଝାଡ଼ି ପକାନ୍ତି ।

କିନ୍ତୁ ସେ ଦିନ ସେ ନୀଳ ଫ୍ରକ୍ ପିନ୍ଧି ବୁଲି ବାହାରିଲା । ଭାଇ କହିଲା, "ନୂଆ ଜାମା ପିନ୍ଧିଛୁ ବୋଲି ଫୁଲେଇ ହେଉଛୁ ।" ମଉସା ଦେଖି ନ ଦେଖିଲା ପରି ଚାଲିଗଲେ । ବାପା କହିଲେ, "ନୂଆ ଜାମାଟା ଏଇଲେ କାହିଁକି ପିନ୍ଧୁଛୁ ? ଧୂଳି ଲାଗିଯିବ ।" କେବଳ ମାଆ ଯାହା କହିଥିଲେ "ତୋତେ ଏ ଜାମାଟି ଖୁବ୍ ଭଲ ମାନିବ ।"

କୁନ ଭାବିଲା ସେଇ ନୀଳ ଫ୍ରକ୍‌ଟା ପିନ୍ଧୁଥିବାରୁ ବିନକୁ ସମସ୍ତେ ଏତେ ଗରଧା କରୁଛନ୍ତି । ମାଆ ତାକୁ ଖାଲି ମିଛରେ ଭୁଲେଇ ଦେଉଛନ୍ତି । ତେଣୁ ସେ ଲୁଚେଇ ବିନର ନୀଳ ଫ୍ରକ୍‌ଟି ପିନ୍ଧି ପକାଇଲା । ଦୁଆରେ ବାପା, ଦାଦା ଓ ମାଆ ବସି କ'ଣ କଥାବାର୍ତ୍ତା ହେଉଥିଲେ । ସେ ସେମାନଙ୍କ ପାଖକୁ ଦୌଡ଼ିଗଲା । ମାଆ ଚିଡ଼ି ଉଠିଲେ, "କୁନ, ପୁଣି ତୁ ସେଇ ଜାମା ପିନ୍ଧିଲୁ ?" ସେତିକିବେଳକୁ ଦାଦା କହିଲେ, "କୁନ ଆଉ ଟିକିଏ ଗୋରା ହୋଇଥିଲେ ଜାମାଟି ବେଶ୍ ମାନିଥାନ୍ତା ।" ବାପା ଟିକିଏ ଜୋରରେ ନିଃଶ୍ୱାସ ମାରିଲେ । ପାଟିରୁ ତାଙ୍କର ବାହାରି ପଡ଼ିଲା—କଅଣ କରିବା, ସେଇ ଟିକକ ଅସୁବିଧା ପାଇଁ ତ ଆମକୁ କେତେ ଧନ୍ଦା ହେବାକୁ ପଡ଼ିବ । ସେଇ ଟିକି ଝିଅଟିର ମୁଣ୍ଡରେ ଏସବୁ ପଶିଲା ନାହିଁ । ସେ କେବଳ ବୁଝିଲା ଯେ ମାଆ ଯାହା କହୁଥିଲେ ସତ । ପ୍ରକୃତରେ ଏ ନୀଳରଙ୍ଗର ଜାମାଟା ତା ଦେହ ରଙ୍ଗକୁ ମାନୁନାହିଁ ।

ଦିହେଁ ଆସ୍ତେ ଆସ୍ତେ ବଡ଼ ହେଲେ । ଏଣିକି ଘରକୁ କିଏ କୁଣିଆ କି ଅତିଥି ଆସିଲେ ବିନକୁ ଡକରା ପଡ଼େ । ସେ ଚା' ଓ ଜଳଖିଆ

ନେଇ ଯାଏ। ବନ ତାଙ୍କର ସବା ସାନ ଝିଅ ବୋଲି ବାପା ବୋଉ ଟିକିଏ ଅଧିକ ଭଲ ପାଆନ୍ତି। କେବେ ଯଦି ପଚାରେ ବଡ଼ ଝିଅଟି କଅଣ କରୁଛି, ବାପା କହନ୍ତି, "କେଉଁଠି ଖେଳୁଥିବ। ଘରୁ ଲାଜେଇଗଲା, ନୂଆ ଲୋକଙ୍କ ପାଖକୁ ଆସିବ ନାହିଁ। ତା'ର ସାତ ଟୋକେଇ ଲାଜ।" ବାପା ବୋଉ ବୁଲି ବାହାରିଲେ ବନ ସଙ୍ଗରେ ଯାଏ। କୁନ ଯିବାକୁ ବସିଲେ ତାକୁ ବୁଝାଇ ଦିଅନ୍ତି, ତୁ ବଡ଼ ହୋଇଗଲୁଣି, ତୋର ଭଲ ବୁଦ୍ଧି, ବନଟା ସାନ, କାନ୍ଦୁରୀଟା। ଘରେ ରହିଲେ ତୋ ସଙ୍ଗରେ କଳି କରିବ, ଆମେ ତାକୁ ନେଇ ଯାଉଛୁ। ସେ ବି ବୁଝିଯାଏ। ଘରେ ପାରୁ ବୋଲି ଯେଉଁ ବୁଢ଼ୀ ଚାକରାଣୀଟା ଅଛି ତା ପାଖରେ ବସି ଗପ ଶୁଣେ।

ପାରୁ କହେ ଗୋରା ସାହେବଙ୍କ ଗପ। ସାହେବଙ୍କ ଘରେ ସେ ଆୟା କାମ କରୁଥିଲା। କେତେ କ'ଣ ଖାଉଥିଲା। କିନ୍ତୁ ତାର ଏ ସୁଖ ସବୁଦିନେ ରହିଲା ନାହିଁ। କାଳ ହେଲେ ଏଇ କଳାଲୋକଗୁଡ଼ାକ। ଏ ଦେଶରେ ଗୋରାଙ୍କୁ ରଖେଇ ଥୋଇ ଦେଲେ ନାହିଁ। ଥାନା ପୋଡ଼ିଲେ, ଡାକଘରେ ନିଆଁ ଲଗାଇଦେଲେ। ଲୁଟ୍‌ତରାଜ କଲେ। ଖଜଣା ଦେଲେ ନାହିଁ। ଶେଷରେ ବାଧ୍ୟ ହୋଇ ବିଚାରା ଗୋରାଲୋକେ ବିଲାତ ପଳାଇଲେ। ତା'ସଙ୍ଗେ ପାରୁର ଦାନାପାଣି ବୁଡ଼ିଲା !। ସେଇ ଦିନଗୁଡ଼ାକ ମନେ ପକାଇ କାଳିକୋଟରୀ ବୁଢ଼ୀଟା ଖାଲି ନାକ ସୁଁ ସୁଁ କରି ସକେଇଲା। କୁନ ତ କେବେ ଗୋରା ସାହେବ ଦେଖିନି। ତା ଦୁଃଖ ବୁଝିବ କୁଆଡୁ ? ପଚାରିଲା, "ସେମାନେ କ'ଣ ଆମ ବନ ପରି ଗୋରା ?" ବୁଢ଼ୀ କହିଲା "ବନ କି ଗୋରୀ ? ମୋ ମେମ୍‌ସାହେବ ନା, ତାଠାରୁ ଶହେ ଗୁଣ ଗୋରୀ।" ଶହେ ଗୁଣ କେତେ କୁନ ଅନୁମାନ କରିପାରିଲା ନାହିଁ। କିନ୍ତୁ ମନେ ମନେ ଭାବିଲା ସତରେ ବନକୁ ଦଣ୍ଡେ ନ ଦେଖିଲେ ମଉସା କେତେ ବ୍ୟସ୍ତ, ଆଉ ବନଠାରୁ ଶହେଗୁଣ ଗୋରୀ ମେମ୍‌ସାହେବଙ୍କୁ ନ ଦେଖି ପାରୁ ନ କାନ୍ଦିବ କାହିଁକି ?"

ଟିକିଏ ଭାବି କୁନ ପଚାରିଲା, "ଆଚ୍ଛା କହିଲୁ ପାରୁ, ତୋ ମେମ୍‌ସାହେବ କଣ ବନ ପରି ଆଳ ଫ୍ରକ୍ ପିନ୍ଧୁଥିଲା ?" ବୁଢ଼ୀ କହିଲା, "ସବୁ ପିନ୍ଧୁଥିଲା। କିନ୍ତୁ ପୁରୁଣା ହେଲେ ସେଗୁଡ଼ାକ ମତେ ଦେଇ ଦେଉଥିଲା।" କୁନ ହଠାତ୍ ପଚାରିଲେ, "ତୁ ସେଗୁଡ଼ାକ ନେଇ କଣ କରୁଥିଲୁ ? ନାଲିଗୁଡ଼ାକ ପିନ୍ଧୁଥିବୁ। ତୋ କଳା ଦେହକୁ ଅନ୍ୟଗୁଡ଼ାକ କ'ଣ

ମାନୁଥିବ ?'' ବୁଢ଼ୀ ଝିକଏ ଗର୍ଜି ଉଠିଲା, " ମୁଁ କଣ ସେତେବେଳେ କଳା ଥିଲି ? ବଳନ୍ତି ସାବୁନରେ ସଫା ହୋଇ ବାସନା ସ୍ନୋ ପାଉଡ଼ରର ମାଖି ଚମଠାରୁ ବି ସଫା ଥିଲି । ଠିକ୍ ବନି ପରି ଦିଶୁଥିଲି ।''

କୁନ ବନ ବର୍ତ୍ତମାନ ହାଇସ୍କୁଲକୁ ଆସିଲେଣି । ଦିନେ କୁନ ଶ୍ରେଣୀକୁ ବିଜ୍ଞାନ ଶିକ୍ଷକ ଆସିଲେ । ବୁଝେଇଲେ ବର୍ଣ୍ଣ କଅଣ, କେତେ ପ୍ରକାର ବର୍ଣ୍ଣ ଥାଏ । ନୀଳ ଆକାଶରେ କଳାହାଣ୍ଡିଆ ମେଘ ଢାଙ୍କିଲେ ଇନ୍ଦ୍ରଧନୁ ଆଙ୍କି ହୋଇଥାଏ । ସତେ ଯେମିତି ସାତବର୍ଣ୍ଣରେ ସଜା ହୋଇଥାଏ ତୋରଣଟିଏ । ବାଟ ଚାଲୁଥିଲେ ବାଟୋଇ ଦଣ୍ଡେ ଅଟକି ଅନେଇ ରହେ । ପିଲାଏ ତ ତାଳି ମାରି ମାରି ଭଲ କରି ଦେଖିବା ପାଇଁ ଉଚ୍ଚ ଜାଗାକୁ ଉଠି ଯାଆନ୍ତି । ବଗିଚାରେ ସେମିତି ଅନେକ ରଙ୍ଗର ଫୁଲ ଫୁଟିଲେ ମନ ଉଲ୍ଲସି ଉଠେ । ବାହାଘର ବା ମେଳା ମଉଚ୍ଛବ ହେଲେ ନାଲି ଓ ନୀଳ ରଙ୍ଗର ବଲ୍ବମାନ ସଜେଇ ଦିଆଯାଏ । ବିଜ୍ଞାନ ଶିକ୍ଷକ କହିଲେ, "ଏ ଯେତେ ସବୁ ବର୍ଣ୍ଣ ସଜ୍ଜା କଥା କୁହାଗଲା, ସବୁ ଖାଲି ଆଖି ଓ ଆଲୁଅର ଖେଳ । ଏଥିପାଇଁ ଏତେ ଖୁସି ହେବାର ବା ଗର୍ବ କରିବାର କିଛି ନାହିଁ ।'' କୁନ ସଙ୍ଗେ ସଙ୍ଗେ ଠିଆ ହୋଇ ପଚାରିଦେଲା, "କଅଣ କଳା ଗୋରା ପାଇଁ ବି ଏଇ କଥା ?'' "ସବୁ ବର୍ଣ୍ଣ ପାଇଁ'' କହି ସାର୍ ଏକ ପରୀକ୍ଷା ଦେଖାଇବାକୁ ଡାକିନେଲେ ।

ଗୋଟିଏ ଅନ୍ଧାର ଘରେ ଅନେକ ବର୍ଣ୍ଣର ବସ୍ତୁ ସଜା ହୋଇଥାଏ । ଧଳା ଆଲୁଅ ଜଳି ଉଠିଲା । ସେ ସବୁ ଯେ ଯାହାର ରଙ୍ଗ ହେତୁ ଚହଲି ହୋଇଗଲେ । ତାପରେ ଗୋଟି ଗୋଟି ହୋଇ ଅଲଗା ଅଲଗା ବର୍ଣ୍ଣର ବଲ୍ବ ଜଳି ଉଠିଲା । ବସ୍ତୁଗୁଡ଼ିକ ଭିତରୁ କିଏ କଳା ଦିଶିଲା ତ କାହାର ବର୍ଣ୍ଣ ପୂରା ବଦଳିଗଲା । କି ଆଶ୍ଚର୍ଯ୍ୟ ! ଆଲୁଅ ନେଇ ବସ୍ତୁର ବର୍ଣ୍ଣ ବଦଳି ଯାଉଛି ! ଯେଉଁ ବସ୍ତୁଟି ବନି ପରି ହଳଦିଆ ଗୋରା ଦିଶୁଥିଲା ନାଲି ଆଲୁଅରେ ତାହା ଫିକା ପଡ଼ିଗଲା ।

କୁନ ଏସବୁ ଦେଖି କହିଲା, "ସାର୍, ବର୍ଣ୍ଣ ବଦଳିବା ତ ଆଲୁଅର ଖେଳ ହେଲା; ଏଥିରେ ଆଖିର କରାମତି ରହିଲା କେଉଁଠି ? ଶିକ୍ଷକ ଆରମ୍ଭ କଲେ ବୈଜ୍ଞାନିକ ଡାଲ୍‌ଟନ୍‌ଙ୍କ କଥା । ଡାଲ୍‌ଟନ୍ ଦିନେ ମାଆଙ୍କ ପାଇଁ

ହଳେ ମୋଜା କିଣି ଆଣି ମାଆଙ୍କୁ କହିଲେ, "ମାଆ, ଦେଖିଲ ଏ ସବୁଜ ରଙ୍ଗର ମୋଜା ହଳକ ତମ ଗୋଡ଼କୁ କମିତି ସାଜିବ ?" ମାଆ କହିଲେ,



"ପୁଅରେ, ନାଲି ମୋଜା ହଳେ ଆଣି ମୋ ସାଙ୍ଗରେ ଥଟ୍ଟା ଖେଳୁଛୁ ! ବୁଢ଼ୀ ବୟସରେ ମୁଁ ନାଲି ମୋଜା ପିନ୍ଧିବି ?" ଡାଲ୍‌ଟନ କହି ଲଗିଥାନ୍ତି ଯେ ତାହା ସବୁଜ ରଙ୍ଗର । କିନ୍ତୁ ଅନ୍ୟମାନେ କହିଲେ ଯେ ତାହା ନାଲି ମୋଜା । ଜଣାପଡ଼ିଲା ଯେ ଡାଲ୍‌ଟନ ହେଉଛନ୍ତି ଜଣେ "ବର୍ଣ୍ଣ ଅନ୍ଧ" । ସେ ନୀଳକୁ ନାଲି ଓ ନାଲିକୁ ନୀଳ କହୁଥିଲେ । ଅନ୍ୟମାନଙ୍କଠାରୁ ଦୁନିଆକୁ ସେ ନୂଆ ବର୍ଣ୍ଣରେ ଦେଖୁଥିଲେ । ପ୍ରକୃତରେ ଯେଉଁ ବର୍ଣ୍ଣପାଇଁ ଆମେ ଏତେ ବାଛ ବିଚାର କରୁ, ସେସବୁ କେବଳ ଆଖି ଓ ଆଲୁଅର ଖେଳ ।

କୁନି କହି ଉଠିଲା, "ତାହାହେଲେ ଏ ସଂସାରରେ କ'ଣ ଏମିତି କେହି ବର୍ଣ୍ଣ ଅନ୍ଧ ନାହାଁନ୍ତି ଯାହା ଆଖିରେ ମୁଁ ହେବି ଗୋରା ?" ସାର୍ ଦୁଃଖିତ ହୋଇ କହିଲେ, "ଏବେ କେହି ନାହାନ୍ତି, ହୁଏତ ଦିନେ କିଏ

ଜନ୍ମ ହୋଇପାରେ । କିନ୍ତୁ ଏହା ସତ କଥା ଯେ ବର୍ଣ୍ଣ ବିଜ୍ଞାନ ବୁଝିଲେ କଳା ଗୋରା ଭେଦ ରହିବ ନାହିଁ । ଆଜି ଆମେ କେବଳ ଆଖି ଓ ଆଲୁଅ ଖେଳରେ ମାତି ଏକ ପ୍ରକାର ବର୍ଣ୍ଣ ଅନ୍ଧ ପାଲଟି ଯାଇଛୁ । ଗୋରା ଗର୍ବରେ ଫାଟି ପଡୁଛୁ ତ କଳା ବାଛନ୍ଦ ହୋଇ ମୁହଁ ଲୁଗୁଇଛୁ । କଳା ଗୋରା ଭେଦ ନେଇ କେତେ ଅନର୍ଥ ଘଟି ଲାଗିଛି ।'' ପିଲାମାନେ ସାର୍‌ଙ୍କ ବକ୍ତୃତାର ମର୍ମ ବୁଝିପାରୁ ନ ଥିଲେ ।



# ମଣିଷ ପିଲା ବାଘ

ଷଡ଼ାନନ୍ଦ କର



ଢେମକା ଜଙ୍ଗଲ ପାଖ ଗାଁଟିଏ । ସେଇ ଗାଁରେ ଘର ସପନର । ଘର ବୋଇଲେ ଭଙ୍ଗାକୁଡ଼ିଆ ଖଣ୍ଡିଏ । ସେଥିରେ ତା'ର ସଂସାର—ସେ ଓ ତା'ର କୁନି ପୁଅଟିଏ । ବାପଛେଉଣ୍ଡ ପିଲାଟିକୁ କେମିତି ପାଳିବ, ପୋଷିବ ବୋଲି ସପନର ସବୁବେଳେ ଭାବନା । ମା'ମନ ତା'ର ଭାରି ବିକଳ ହୁଏ । ମାଗି ଖାଇବାକୁ ସେ ଭଲପାଏ ନାହିଁ । ସେଇଥି ପାଇଁ ପ୍ରତିଦିନ ସେ କାମକୁ ଯାଏ ।

ଛଅମାସର ପିଲାଟିକୁ ଲୁଗାରେ ଗୁଡ଼େଇ ପିଠିରେ ପକେଇ ସପନ ଘରୁ ବାହାରିଯାଏ । ଘର ପାଖରୁ ଦୁଇ କୋଶ ବାଟରେ ରାସ୍ତାକାମ ହେଉଥାଏ । ସେଇଠି ମାଟି ବୁହେ ସପନ । ଢେମକା ଜଙ୍ଗଲବାଟେ ଫେରିଲାବେଳେ ତାକୁ ଭାରି ଡରମାଡ଼େ ।

ଦିନେ କାମରୁ ଫେରୁ ଫେରୁ ସନ୍ଧ୍ୟା ହୋଇଆସୁଥାଏ । ସପନ ପୁଅଟିକୁ ନେଇ ଘରକୁ ଫେରୁଥାଏ । ବାଟରେ ନିକାଞ୍ଚନିଆ ଜଙ୍ଗଲ । ସେଦିନ

ସେ ଏକୁଟିଆ । ଚାଲିଲାବେଳେ ପତରଟାଏ ଖଡ଼୍‌କିନା ହେଲେ କମ୍ପା ଚଢ଼େଇଟାଏ ଫଡ଼୍‌କିନା ଉଡ଼ିଗଲେ ସପନର ଛାତିଟା ଧଡ଼୍‌କିନା ପଡ଼େ— କେଉଁଠି କିଏ ଆସିଲା କି ଆଉ ? କିଛିବାଟ ଯିବା ପରେ ସେ ହଠାତ୍ ଦେଖିଲା, ତା' ଆଗରେ ଗୋଟାଏ କ'ଣ ଜନ୍ତୁ । ଭଲ କରି ଚାହିଁଲା ସପନ— ଯାହା ଦେଖିଲା, ସେଥିରେ ତା'ର ଗୋଡ଼ହାତ ଥରିବାକୁ ଲାଗିଲା ବରଡ଼ାପତ୍ର ଭଳି, ପାଟି ଅଠା ଅଠା ହୋଇଗଲା, ମୁହଁ କଳା ପଡ଼ିଗଲା । କ'ଣ କରିବ ସେ—କେମିତି ବଞ୍ଚେଇବ ତା'ର ଗଣ୍ଠିଧନକୁ, ଗଳାର ମାଳକୁ ? ଆଉ ରକ୍ଷା ନାହିଁ । ଏତେ ବଡ଼ ବାଘ ମୁହଁରୁ ସତେ କ'ଣ ଆଉ ସେ ବଞ୍ଚିବ ? ଆଜି ବାଘ ନିଶ୍ଚୟ ଚଟଣି କରିଦେବ ତାକୁ ଓ ତା' ପୁଅକୁ ।

ଆଗରେ ବସିଛି ବାଘ । କେତେ କେତେ ଆଖିରେ ଚାହିଁଛି, ଲାଞ୍ଜ ହଲଉଛି । ସପନ ଭାବିଲା ଆଗକୁ ଗଲେ ତ ବାଘ ଖାଇବ, ପଛକୁ ଫେରିଗଲେ ବାଘ ଧାଇଁଆସି ଆକ୍ରମଣ କରିବ । କ'ଣ ଏବେ କରିବ ସେ ତା ତାଳୁକ ଶୁଖିଗଲା । ଝାଳ ବୋହିଲା । କେତେବେଳ ଯାଏ ସେ ତଳେ ମୁହଁ ମାଡ଼ି ପଡ଼ି ରହିଲା । ଉଠିଲା ନାହିଁ କି ହଲଚଲ ବି ହେଲାନାହିଁ । ବାଘ କିନ୍ତୁ ସେମିତି ବସି ରହିଥାଏ ।

କିଛି ସମୟ ପରେ ପିଲାଟା କାନ୍ଦି ଉଠିଲା । ଶବ୍ଦ ଶୁଣି ବାଘ କଟମଟ କରି ଚାହିଁଲା । ତା'ପରେ ଭଡ଼ମୋଡ଼ ହୋଇ ହେଣ୍ଟାଳ ଛାଡ଼ି ଉଠିଲା ଓ ଧୀରେ ଧୀରେ ପାହୁଲ ପକାଇ ଆଗକୁ ଚାଲିଲା—ସପନ ପାଖରେ ଯାଇ ପହଞ୍ଚିଲା । ସପନ ଟିକିଏ ଚେତା ପାଇ ବାଘକୁ ଯେମିତି ପାଖରେ ଦେଖିଛି ଭୟ ଓ ଆତଙ୍କରେ ତା' ପ୍ରାଣବାୟୁ ଉଡ଼ିଗଲା । ପିଲାଟା ମା'ର ପିଠି ଉପରେ ଥାଇ ଲୁଗା ମୁଣା ଭିତରୁ ବଲବଲ ଚାହୁଁଥାଏ । ଟିକିକ ପରେ ସେ ପୁଣି କାନ୍ଦି ଉଠିଲା । ଏଥର ବାଘଟା ସପନ ପାଖକୁ ଯାଇ ତାକୁ ଶୁଙ୍ଘିଲା । ମଲା ମଣିଷ ବୋଲି ଜାଣିପାରିଲା କି କଣ, ମୁହଁଟାକୁ ବୁଲେଇ ନେଲା । କିନ୍ତୁ ପଳେଇ ନ ଆସି କମ୍ପା ପିଲାଟାକୁ ପାଟିରେ ନ ପକେଇ ସେଇଠି ବସି-ପଡ଼ିଲା ।

ସନ୍ଧ୍ୟାବେଳ ଗଡ଼ି ରାତି ହେଲା । ଘୋର ଅନ୍ଧାର ମାଡ଼ି ଆସିଲା । ବଣ ଭିତରଟା କେତେ କଟିକଟିଆ ଅନ୍ଧାର । ସେଇ ଅନ୍ଧାର ଭିତରେ ବାଘ ଓ ସପନର ଟିକି ପୁଅଟି । ଆଉ କେଉଁଠି ହେଲେ କେହି ନାହାନ୍ତି ।

ଟିକି ପୁଅଟି ରହି ରହି କାନ୍ଦୁଥାଏ । କ୍ଷୀର ଖାଇବ ବୋଲି ବୋଧହୁଏ ମା'କୁ ଖୋଜୁଥାଏ । ବାଘ ମନକୁ କ'ଣ ଆସିଲା କେଜାଣି, ସେ



ହଠାତ୍ 'ଉଠିପଡ଼ି ସପନର ପିଠି ଉପରୁ ଟିକି ପୁଅଟିକୁ ଝାମ୍ପି ନେଇ ଧାଇଁ ପଳେଇଲା ଜଙ୍ଗଲ ଭିତରକୁ ।

ତହିଁ ପରଦିନ ସେହି ବାଟରେ ଯିବା ଲୋକେ ଦେଖିଲେ ଯେ, ସପନ ମରିପଡ଼ିଛି, ଆଉ ତା' ପାଖରେ ଓ ଚାରିପଟେ ବାଘର ପାଦଚିହ୍ନ । ସପନର ଟିକି ପୁଅଟିକୁ ବାଘ ଚଳୁ କରିଦେଇଚି ବୋଲି ସମସ୍ତେ ଭାବିଲେ । ଜଣେ ବଣୁଆ ଲୋକ ପାଦଚିହ୍ନ ଠଉରେଇ କହିଲା ଯେ, ସେଇଟା ବାଘ ନୁହେଁ, ଗୋଟାଏ ବାଘୁଣୀ ଏବଂ ସେ ହେଉଛି ଏ ବଣର ରାଣୀ ।

କିଛିଦିନ ବିତିଗଲା । ସପନ ଓ ତା'ର ଟିକିପୁଅ କଥା ଗାଁ ଲୋକେ ଭୁଲିଗଲେ ।

'ବାଘୁଣୀ ରାଣୀ' ସେଦିନ ରାତିରେ ସେ ଟିକି ପୁଅଟିକୁ ନେଇଗଲା ତା'ର ଗୁମ୍ଫାକୁ । ସେଇଠି ସେ ପତର ଶେଯରେ ଶୁଆଇଦେଲା ପିଲାଟାକୁ । ଟୋପାଏ ପାଣି ଆଣି ତା' ପାଟିରେ ଦେଲା । ପିଲାଟି ନରମ ଶେଯ ପାଇ,

ପାଣି ପିଇ ଟିକଏ ଶୋଇ ପଡ଼ିଲା । ସେତେବେଳକୁ ସେ କାନ୍ଦି କାନ୍ଦି ଥକି ଯାଇଥିଲା । ଶୋଷରେ ପାଟି ତା'ର ପାକୁ ପାକୁ ହେଉଥିଲା । ରାତିଟାଯାକ ବାଘୁଣୀ ଟିକି ପୁଅ ପାଖରେ ଜଗି ରହିଲା ।

ସକାଳ ହେଲା । ଆଉ ସବୁ ବାଘ ବାଘୁଣୀ ଓ ବାଘଛୁଆମାନେ ଆସି ରୁଣ୍ଡ ହେଲେ । ଏପରି ଏକ ଜୀବଟିଏ ଦେଖି ସେମାନେ ସମସ୍ତେ ବଲବଲ କରି ଚାହିଁ ରହିଲେ । ବାଘୁଣୀ ରାଣୀ ସେମାନଙ୍କୁ ଇସାରାରେ କ'ଣ କହିଲା କେଜାଣି, କେହି ସେ ପିଲାର କିଛି ଅନିଷ୍ଟ କଲେ ନାହିଁ । କାଳେ ନଖ ବାଜି ପିଲାର ଦେହ ଖଣ୍ଡିଆ ହୋଇଯିବ, ସେଥିପାଇଁ ରାଣୀ ବାଘୁଣୀ ତା' ହାତର ପଞ୍ଝାକୁ ମୁଠେଇ ପିଲାର ଦେହକୁ ଆଉଁସି ଦେଲା । ନରମ ପରଶ ପାଇ ପିଲାଟି ଖୁସି ହେଲା । ସେ ତା'ର ଟିକି ପାଟିରେ ଟିକଏ ହସି-ଦେଲା । ତା' ହସ ଦେଖି ରାଣୀ ବାଘୁଣୀ ଆନନ୍ଦରେ କୁରୁଳି ଦୁଇଥରେ ନାଚକୁଦ ପକାଇଲା । ସତେ ଯେପରି ସେ ଗୋଟାଏ କୋଟିନିଧି ପାଇଛି । ତା'ପରେ ରାଣୀ ଧାଇଁଗଲା ଖଣ୍ଡେ ବାଟ । କିଛି ପତ୍ର ଛିଣ୍ଡାଇ ଆଣିଲା ଓ ସେହି ପତ୍ରରୁ ବାହାରୁଥିବା ଧଳା ଧଳା ରସକୁ ସେ ପିଲାଟିର ପାଟିରେ ଦେଲା । ପିଲାଟି ପିଇଲା । ତାକୁ ବୋଧହୁଏ ଭଲ ଲାଗିଲା ।

ରାଣୀ ମା'ର ଯତ୍ନରେ ପିଲାଟି ଧୀରେ ଧୀରେ ବଢ଼ିବାକୁ ଲାଗିଲା । ରାଣୀ ମା' ତାକୁ କଅଁଳ ମାଂସ ଆଣି ଦିଏ । ପିଲାଟି ଆନନ୍ଦରେ ଖାଇଦିଏ । ଏମିତି ଚାରି ପାଞ୍ଚ ବର୍ଷ ବିତିଗଲା । ମଣିଷ ପିଲାଟି ଜଙ୍ଗଲ ଭିତରେ ଥାଏ । ବାଘୁଣୀ ରାଣୀ ତାକୁ ଅତି ଆଦରରେ ପାଳୁଥାଏ । ପିଲାଟି ସଙ୍ଗରେ ସେ ଖେଳେ, ବୁଲେ । ତାକୁ ଆଗେ ଖୁଆଏ, ତା'ପରେ ସେ ନିଜେ ଖାଏ । କାଳେ କିଏ ପିଲାଟିର ଅନିଷ୍ଟ କରିବ, ସେଥିପାଇଁ ରାଣୀ ମା' ତାକୁ ସବୁ-ବେଳେ ଗୋଡ଼େ ଗୋଡ଼େ ଜଗିଥାଏ ।

ପିଲାଟି ଗୋଡ଼ରେ ନ ଚାଲି ଦୁଇ ହାତ ଓ ଦୁଇ ଗୋଡ଼ରେ ପଶୁ ଭଳି ଚାଲେ । ବାଘ ଭଳି ସେ ଶବ୍ଦ କରେ । ବାଘ ଭଳି ତା'ର ଠାଣି ଓ ଚାହାଣି । ରାଣୀମା' ସାଙ୍ଗରେ ସେ ଝରଣାକୁ ଯାଏ, ଗାଧାଏ, ପାଣି ପିଏ, ବଣରୁ ଫଳ ଖାଏ । ବଣ କୁକୁଡ଼ା ଓ ହରିଣଛୁଆ ମାଂସ ଖାଏ । ବାଘ ଭଳି ସେ କୁଦାମାରେ, ଝାମ୍ପଦିଏ, ଝପଟିଯାଏ ।

ଦିନେ ସେ ଗଣୀମା' ସାଙ୍ଗରେ ଯାଇଥିଲା ବଣ ସେପାରି ମୁଣ୍ଡିଆକୁ । ଝିଅବେଳ । ବଣରେ କେଇଜଣ କାଠୁରିଆ କାଠ କାଟୁଥିଲେ । ଗଣୀମା' ଓ ପିଲାଟି ବଣ ପାରିହୋଇ ଗଲାବେଳେ କାଠୁରିଆଙ୍କ ନଜର ପଡ଼ିଗଲା । ସେମାନେ ନିରେଖି ଚାହିଁଲେ । ଜଣେ କିଏ ପାଟିକରି କହିଲା—ଆରେ, ଆରେ, ଏ ଛୁଆଟା ତ ବାଘଛୁଆ ପରି ଦିଶୁନାହିଁ—ମଣିଷ ପିଲା ଭଳି ଦିଶୁଚି, କିନ୍ତୁ ବାଘ ଭଳି ଚାଲୁଚି । ହୋ-ହାଲ୍ଲା କରିବାରୁ ଗଣୀମା' ଓ ପିଲାଟି କୁଦାମାରି ପଳାଇଗଲେ ।

କଥାଟା କିନ୍ତୁ ସଙ୍ଗେ ସଙ୍ଗେ ପ୍ରଘଟ ହୋଇଗଲା । ପ୍ରକୃତ ଘଟଣା ଜାଣିବା ଲାଗି ଦଳ ଦଳ ହୋଇ ଲୋକ ବଣକୁ ଗଲେ । ବର୍ଚ୍ଛା, ବନ୍ଧୁକ ଇତ୍ୟାଦି ଧରି ଶିକାରୀମାନେ ମଧ୍ୟ ଗଲେ । ସେମାନେ ବଣଯାକ ବୁଲିଲେ । ଶେଷକୁ ଗୋଟିଏ ଝରଣା ପାଖରେ ପହଞ୍ଚି ଦେଖିଲେ ଯେ, ପିଲାଟିଏ ପାଣି ପିଉଚି । ପିଲାଟିର ଆକୃତି ମଣିଷ ଭଳି, କିନ୍ତୁ ତା'ର ଆଚରଣ ବାଘ ଭଳି । ସେତେବେଳେ ବାଘୁଣୀ ଗଣୀ ମା' ଦୂରକୁ ଯାଇଥାଏ ପିଲା ପାଇଁ ଆହାର ଆଣିବାକୁ । ଏହି ସୁଯୋଗରେ ଶିକାରୀ ଦଳ ସେ ପିଲାକୁ କୌଶଳକ୍ରମେ ଧରି ପକାଇଲେ । ସଙ୍ଗେ ସଙ୍ଗେ ନେଇ ଆସିଲେ ସହରକୁ । ଏହି ଅଦ୍ଭୁତ ପିଲାଟିକୁ ଦେଖିବା ଲାଗି ହଜାର ହଜାର ଲୋକ ରୁଣ୍ଡ ହେଲେ । ଖବରକାଗଜରେ ତାରି ଛବି ଓ ସମ୍ବାଦ ବାହାରିଲା । ପିଲାଟି କିନ୍ତୁ ମଣିଷ-ମାନଙ୍କୁ ଦେଖି କାବା ହୋଇ ଯାଉଥାଏ । ତାରି ଭଳି ପିଲାମାନଙ୍କୁ ଦେଖି ସେ ବଲବଲ କରି ଚାହୁଁଥାଏ ।

ପିଲାଟିର ଦେହଯାକ ଲମ୍ବା ଲମ୍ବା ଲୁମ, ମୁଣ୍ଡରେ ଗୋଛାଏ ବାଳ, ଦେହଟାର ରଙ୍ଗ କସରା, ହାତରେ ବଡ଼ ବଡ଼ ନଖ, ପାଦଗୁଡ଼ାକ ଚଉଡ଼ା, ହାତ ପାପୁଲି ଓ ପଞ୍ଝା ଖୁବ୍ ଟାଣ । ବାଘ ଭଳି ଗର୍ଜ୍ଜନ କରୁଚି । ତାକୁ ସମସ୍ତେ 'ବାଘ' ବୋଲି ଡାକିଲେ ! ତା' ନାଁ ହେଲା 'ବାଘ' ।

ଏଇ ଅଦ୍ଭୁତ ପିଲାଟିକୁ ଡାକ୍ତରଖାନାକୁ ନିଆଗଲା । ଡାକ୍ତର-ମାନେ ପରୀକ୍ଷା କରି ଜାଣିଲେ ଯେ, ସେ ପ୍ରକୃତରେ ମଣିଷ ପିଲା; କିନ୍ତୁ ପିଲାବେଳୁ ବାଘ ମେଳରେ ରହି ତା'ର ଆଚରଣ ଏମିତି ହୋଇଯାଇଚି । ଡାକ୍ତରମାନେ ଚେଷ୍ଟା କଲେ 'ବାଘ'କୁ ମଣିଷ କରିବା ପାଇଁ । 'ବାଘ' କିନ୍ତୁ

କିଛି ଖାଉ ନ ଥାଏ, ମନ ମାରି ବସିଥାଏ, ଆଖିରୁ ଲୁହ ବୋହି ଯାଉଥାଏ ତାର ।

'ବାଘ'କୁ ଧରି ଆଣିବା ପରେ ବାଘୁଣୀ ରାଣୀ ମାଂସ ଆଣି ଝରଣା କୂଳରେ ପହଞ୍ଚି ଦେଖିଲା ଯେ ପିଲାଟି ନାହିଁ । ସେ ଏଣେତେଣେ କେତେ ଖୋଜିଲା, କିନ୍ତୁ ପାଇଲା ନାହିଁ । ମଣିଷମାନଙ୍କର ପାଦଚିହ୍ନ ସେ ବଣ ଭିତରେ ଦେଖିଲା । ସେଇ ପାଦଚିହ୍ନକୁ ଠଉରେଇ ସେ ଯାଇ ପହଞ୍ଚିଲା ଏକ ସହର ପାଖରେ । ସେଇଠି ସେ ଗୋଟିଏ ବୁଦା ଭିତରେ ଲୁଚି ରହିଲା । ରାତି ଅଧକୁ ସେ ବୁଦାରୁ ବାହାରିଲା । ଧୀରେ ଧୀରେ ପାହୁଲ ପକାଇ ପକାଇ ସେ ଚାଲିଥାଏ । କାଳେ କିଏ ଦେଖିବ ବୋଲି ସେ ଲୁଚିଛପି ଯାଉଥାଏ । ସେ ସିନା ବଣରେ ରାଣୀ, ସେଠି ତାକୁ ସମସ୍ତେ ଡରନ୍ତି । କିନ୍ତୁ ସହରରେ ମଣିଷମାନଙ୍କୁ ତାର ଭାରି ଭୟ ।

ରାଣୀମା' ଡାକ୍ତରଖାନା ବାଟ ଦେଇ ଗଛ ଉହାଡ଼ରେ ଯାଉଥିବା ବେଳେ ଗୋଟାଏ ବାଘଛୁଆର ଗର୍ଜ୍ଜନ ଭଳି ତାକୁ ଶୁଭିଲା । ସେ ଭଲ କରି କାନେଇଲା । ଜାଣିପାରିଲା ଯେ ଇଏ ତ ସେଇ ପିଲାର ଶବ୍ଦ, ଯାହାକୁ ସେ ପାଳି ଆସିଛି ଆଜଯାଏ ପୁଅ ପରି । ରାଣୀ ମା' ବ୍ୟାକୁଳରେ ଡାକିଲା ତାର ପୁଅକୁ । ସେ ଶବ୍ଦ ଶୁଣି ଚମକି ପଡ଼ିଲା ଡାକ୍ତରଖାନାରେ ଥିବା 'ବାଘ' । ତା ପ୍ରାଣ ଛଟପଟ ହୋଇଉଠିଲା—ରାଣୀମା'ର ଡାକରେ । ସତେ ଯେପରି ନିଜ ମା' ତାକୁ ଡାକୁଛି । ଆଉ ଥରେ ଡାକିଲା ରାଣୀମା' । କେତେ ମିଠା, କେଡ଼େ କରୁଣ, କେଡ଼େ ମନଭୁଲା ସେ ଡାକ ! ଚହଲିଗଲା 'ବାଘ' ମନ । ସେ ଚଞ୍ଚଳ ଓ ଅଧୀର ହୋଇଉଠିଲା—କୁଦି ପଡ଼ିଲା ଘର ଭିତରେ । ଦୁଇ ତିନି ଧକ୍‌କାରେ ଝରକାର ଲୁହା ରେଲିଂକୁ ବଙ୍କା କରି ସେ ଡେଇଁ ପଡ଼ିଲା ବାହାରକୁ । ନଜର ପଡ଼ିଗଲା ରାଣୀମା'ର । ଧାଇଁ ଆସି କୁଣ୍ଢେଇ ପକେଇଲା ଠିକ 'ବାଘ'କୁ, ତାର ଆଦରର ଧନକୁ । ଜିହ୍ୱାରେ ସ୍ନେହରେ ଦେହକୁ ତାର ଚାଟି ପକାଇଲା । ଆଖିରୁ ତାର ଲୁହଧାର ବୋହିଗଲା ଆନନ୍ଦରେ । 'ବାଘ' ଅତି ଖୁସିରେ ମଣିଷଙ୍କ ଭଳି ଜାବୁଡ଼ି ଧରିଲା ତାର ରାଣୀମାକୁ । ସତେ ଯେପରି ସେ ତାର ମାକୁ ଫେରିପାଇଛି । ସ୍ନେହର କି ଆକର୍ଷଣ !

'ବାଘ'କୁ ଶୂନ୍ୟେ ଶୂନ୍ୟେ ଟେକନେଇ ରାଣୀମା' ଧାଇଁ ପଳାଇଲା ବଣ ଭିତରକୁ । ଏଥର ସେ ବଣ ନୁହେଁ, ଆଉ ଗୋଟିଏ ବଣକୁ ।

ପରଦିନ ଜଣାଗଲା ଯେ, ଡାକ୍ତରଖାନାରୁ 'ବାଘ' ପଳେଇଛି । ସତେ ଯେପରି ସେ ମଣିଷ ହୋଇ ରହିବାକୁ ଚାହେଁ ନାହିଁ, ବରଂ ବଣର ବାଘ ହୋଇ ରହିବାରେ ତାର ଅଧିକ ଆନନ୍ଦ ! ❊



❊ [ ଏହା 'ଗଧିଆ ବାଳକ ରାମୁ' ଗପ ନୁହେଁ, ଏହା ଏକ ସଂପୂର୍ଣ୍ଣ ମନଗଢ଼ା କାହାଣୀ ]




ରାସ୍ତା ମଝିଟାରେ ଭାରି ଭିଡ଼ । ଯାନବାହନ ଦୁଇପଟରୁ ବନ୍ଦ ହୋଇ ପଡ଼ିରହିଛି । ଲୋକେ ଭିଡ଼ ଭିତରେ କଣ ହୋଇଚି କେହି ଜାଣି-ପାରୁନାହାନ୍ତି । ବେଳେ ବେଳେ ଖାଲି ପାଟି ଶୁଭୁଚି "ଆରେ ବାଲ୍‌ଟିଏ ପାଣି ଆଣ ।"

"ବାଭୁ" ଠିକ୍ ସେତିକବେଳେ ସ୍କୁଲକୁ ବାହାରି ରାସ୍ତା ପାରି ହେବାକୁ ଚେଷ୍ଟା କରୁଥିଲା । ହେଲେ ଭିଡ଼ ଭିତରେ ଆଗକୁ ଯାଇ ପାରିଲା ନାହିଁ ।

ପାଣି ଆଣିବା କଥା ଶୁଣି ସେ ଭାବିଲା ବୋଧହୁଏ କୋଉଠି ନିଆଁ ଲାଗି ଯାଇଚି । କିନ୍ତୁ ନିଆଁ ଲାଗିଥିଲେ ତ ନିଶ୍ଚେ ନିଆଁ ଲିଭା ଗାଡ଼ି ଏତେ-ବେଳକୁ ଆସନ୍ତାଣି ? ତେବେ କଣ କେହି ଦୁର୍ଘଟଣାରେ ଆହତ ହୋଇ ପଡ଼ିରହିଚି ? କାହିଁ ପୁଲିସବାଲା ତ ଦେଖାଯାଉନାହାନ୍ତି ?

ବାଭୁ ଚେଷ୍ଟା କଲା ଭିଡ଼ ଭିତରକୁ ପଶିବା ପାଇଁ । ହେଲେ ଛୋଟ ପିଲାଟା, ଯେତେଥର ସେ ଭିଡ଼ ଭିତରକୁ ଗଲା, ବଡ଼ ମଣିଷମାନଙ୍କର ଠେଲାପେଲାରେ ପଛକୁ ଘୁଞ୍ଚି ଆସୁଥାଏ ।

ଶେଷରେ ଠିକ୍ କଲା, ଦୂରରେ ଠିଆହୋଇ ଘଟଣାଟା କଣ ବୁଝିବ ।

ଏତିକବେଳେ କିଏ ଗୋଟାଏ ଚିତ୍କାର କଲା—"ଆରେ "କାଲୁ" ଭାଇ, ଫୁର୍ତ୍ତି ପାଣି ଆଣ । "ସନା" ଆଉ ବଂଚିବ ନାହିଁରେ !"

ବଭ୍ରୁ "ସନା" ନାଁଟା ଶୁଣି ଚମକି ପଡ଼ିଲା । ଭାବିଲା ବୋଧହୁଏ ସନା ବୋଲି କେହି ଲୋକ ଦୁର୍ଘଟଣାର ସମ୍ମୁଖୀନ ହୋଇ ନିଶ୍ଚେଷ୍ଟ ରାସ୍ତା ଉପରେ ପଡ଼ିଛି ।

ଏତିକବେଳେ ପାଖ ପରିବାବାଲା "କାଲୁ" ଧଇଁସଇଁ ହୋଇ ପାଣି ବାଲ୍‌ଟିଟା ଧରି ଭିଡ଼ ଭିତରେ ପଶିବାକୁ ଯାଇ ପାଟି କଲା "ବାଟ ଛାଡ଼, ବାଟ ଛାଡ଼" । ଲୋକେ ଆଡ଼େଇ ହୋଇଗଲେ । ଲୋକେ ଆଡ଼େଇ ହେଲାବେଳେ ସେଇ ଫାଙ୍କରେ ବଭ୍ରୁ ଦେଖିଲା ସତକୁ "ସନା" ରକ୍ତାକ୍ତ ହୋଇ ରାସ୍ତା ଉପରେ ପଡ଼ିଛି । "କାଲୁ" ପାଣି ବାଲ୍‌ଟିଟା ନେଇ ଯେମିତି ପହଞ୍ଚିଛି, ସେଠି ଠିଆ ହୋଇଥିବା ଲୋକେ କହିଲେ ଆଉ ପାଣି କାହିଁକି ଆଣୁଛୁ ରେ ? ଡାକ୍ତରବାବୁ ଆସିଥିଲେ । କହିଲେ ତା ମୁଣ୍ଡରେ ଟ୍ରକ୍ ଧକ୍‌କା ବାଜି ଭିତରୁ ରକ୍ତସ୍ରାବ ହୋଇ ତା ପାଟିବାଟେ ରକ୍ତ ଧାର ଛୁଟିଛି ।

ଯେଉଁ ଟ୍ରକ୍ ଧକ୍‌କା ଦେଇଥିଲା, ତାର ଖୋଜ ନବାକୁ ଧାଇଁ ଦଳେ ଯୁବକ ଆସି କହିଲେ ଟ୍ରକ୍‌ବାଲା ଧରା ପଡ଼ି ମାଡ଼ ଭୟରେ ଥାନାରେ ଲୁଚିଛି ।

"କାଲୁ" କହୁଥାଏ, ଲୁଚିଲେ ମୁଁ କଣ ତାକୁ ଛାଡ଼ିଦେବି । "ସନା" ଯଦି ନ ବଂଚେ ମୁଁ ତା ଗୋଡ଼ ନିଶ୍ଚେଷ୍ଟ ଛେଚା କରିଦେବି । ଲୋକେ ତାକୁ ବୋଧ ଦେଇ କହୁଥାଆନ୍ତି, ସେକଥା ପଛେ "କାଲୁଭାଇ", ଆଗ ଆମ "ସନା"ଟା ବଂଚୁ । କାଲୁ ପାଟି କରୁଥାଏ—ମୁଁ ଜମା ଟ୍ରକ୍ ବାଲାକୁ ଛାଡ଼ିବି ନାହିଁ ।

କିନ୍ତୁ "କାଲୁ"ର ଏ କଥା ଶୁଣି ତାର ମନେ ପଡ଼ିଲା ଗୋଟିଏ ଅଳ୍ପ କେତେ ଦିନ ତଳର ଘଟଣା । ସେ ନିଜେ ଦେଖିଛି, କାଲୁ ଦୋକାନରେ ମୁହଁ ପୂରାଇ ସନା ପରିବା ଖାଇଥିଲା ବୋଲି ସେଦିନ କାଲୁ "ସନା"କୁ ଠେଙ୍ଗାରେ କି ନିର୍ଦ୍ଦୟ ମାଡ଼ ଦେଇଥିଲା । ଆଜି

ବରୁଣ "ସନା" ଟ୍ରକ୍ ଧକ୍କାରେ ଆହତ ହେଲା ପରେ କାଲୁର ତା ପ୍ରତି ସତେ କି ଦୟା !

ଏ "ସନା"ଟା ମଣିଷ ନୁହେଁ । ସାହିର ଏକ କାଳିଆ ଷଣ୍ଢ । ଲୋକେ ତାକୁ ନାଁ ଦେଇଚନ୍ତି "ସନା" । କେହି କେହି ଗେହ୍ଲାରେ ତାକୁ ଡାକନ୍ତି "ସୁନା" । ଗୋଡ଼ା ଷଣ୍ଢଟିଏ । ଡାଳ ଡାଳ ସେ ରାସ୍ତାରେ ବୁଲେ । ସକାଳୁ ଦୋକାନରୁ ଦୋକାନକୁ ଯାଇ କୋଉଠୁ ପରିବାଟାଏ, ଗୁଡ଼ିଆ ଦୋକାନରୁ ମିଠେଇଟାଏ ଖାଇ ଖାଇ ତାର ପେଟ ପୂରେ ।

ଯୋଉ ଦିନ ସନା ମୁହଁ ନ ଦେଖାଏ, ସେ ଦିନ ଦୋକାନୀ-ମାନଙ୍କର ଖୋଜା ପଡ଼େ ସନା କୁଆଡ଼େ ଗଲା ବୋଲି ।

କାହାର କିଛି ମାନସିକ ଥିଲେ, ଖୋଜି ଖୋଜି ତାକୁ ଦୁବ, ଅରୁଆ ଚାଉଳ ଖୁଆଇ ଲୋକେ ପାପମୁକ୍ତ, ଶାପମୁକ୍ତ ହୁଅନ୍ତି ।

ବିଭୁ ବି କେତେ ଥର ସନାକୁ ଦୁବ ଅରୁଆ ଚାଉଳ ଦେଇ ପରୀକ୍ଷା ଦେବା ପାଇଁ ଯାଇଚି । ଭାରି ସୁଧାର ଷଣ୍ଢଟିଏ । କାହାରିକୁ କେବେ ମାରିବା କି ଭୁଷିବାର କେହି ଦେଖି ନାହାଁନ୍ତି ।

ତେବେ ଆର ସାହିର ନାଲିଆ ଷଣ୍ଢ ଯଦି କେବେ ଭୁଲରେ ଏ ପାଖ ରାସ୍ତାକୁ ଆସିଚି "ସନା" ସାଙ୍ଗରେ ତାର ଲାଗି ଯାଇଚି ଲଢ଼େଇ । ସେତେବେଳେ କାଲୁ ପରିବା ଦୋକାନୀ "ସନା"ର ପକ୍ଷ ନେଇ, ତାକୁ ଉତ୍ସାହିତ କରିଚି ଲଢ଼ିବା ପାଇଁ । ଷଣ୍ଢ ଲଢ଼େଇ ଦେଖିବାକୁ ରାସ୍ତାରେ ଭିଡ଼ ଜମିଚି । ସବୁଥର ସନା ଜିତିଚି । "କାଲୁ"ର ଖୁସି ଦେଖେ କିଏ । ଯେତେଥର ସନା ଜିତିଚି କାଲୁ ତାକୁ କିଲେ ଓଜନରୁ କମ୍ ପରିବା ନ ଖୋଇ ଛାଡ଼ି ନାହିଁ ।

ହେଲେ "ସନା" ଆଜି ମୃତ୍ୟୁ ସହିତ ସଂଗ୍ରାମ କରୁଚି । ସାହିର ଅଣ୍ଡାଠାରୁ ଭେଣ୍ଡାଯାଏ ସମସ୍ତେ ଘେରି ରହିଚନ୍ତି ତାକୁ । ସମସ୍ତଙ୍କର ଶିବଙ୍କ ନିକଟରେ ପ୍ରାର୍ଥନା ସନା ବିପଦମୁକ୍ତ ହେଉ ।

କାଲୁ ଆଖିରୁ ଲୁହ ଝରି ପଡ଼ୁଚି । ସତେ ଯିମିତି ତାର ନିଜର କେହି ଦୁର୍ଘଟଣାରେ କ୍ଷତବିକ୍ଷତ ହୋଇ ରାସ୍ତା ମଝିରେ ପଡ଼ି ରହିଚି । ପାଣି ବାଲ୍‌ଟିଟାକୁ ମଝିରେ ରଖି ସେ ସନା ମୁହଁରେ ଛାଟିବାକୁ ଲାଗିଚି । ହେଲେ ସନା ପାଟିରୁ ତାର ରକ୍ତ ଧାର ଛୁଟି ଚାଲିଚି ।

ହଠାତ୍ "ସନା"ର ଚେତା ଫେରିଲା ନା କଣ, ସେ ଶେଷ ଥର ପାଇଁ ତା ମୁଣ୍ଡଟାକୁ ଉପରକୁ ଟେକି କାଲୁ କୋଳରେ ଦୁମ୍ କରି କରୁଡ଼-ଦେଲା । ତାପରେ ସବୁ ଶେଷ······ପାଖରେ ଠିଆ ହୋଇଥିବା ଲୋକେ କେହି କୋହ ସମ୍ଭାଳି ପାରିଲେ ନାହିଁ । ସମସ୍ତଙ୍କ ଆଖିରେ ଲୁହ । କାଲୁ ପାଲଟି ଯାଇଛି ମୂକ ।

ବବୁ ସେଇଠି ଠିଆ ହୋଇ ସବୁ ଦେଖୁଥିଲା । ତା ଆଖିରୁ ବି ଲୁହ ଧାର ଝରି ପଡ଼ୁଥିଲା । ସେ ଖାଲି ମନେ ମନେ କହୁଥିଲା, ପଶୁପକ୍ଷୀମାନଙ୍କ ପ୍ରତି ନିଷ୍ଠୁରତା ପରିବର୍ତ୍ତେ ଯଦି ଆମ ସମସ୍ତଙ୍କର ଏତିକି ଦୟା ରହନ୍ତା, ସତେ ଆମ ପୃଥିବୀ କେଡ଼େ ସୁନ୍ଦର ନ ହୁଅନ୍ତା !



# ସୁନ୍ଦର କିଏ ?

## ନିକୁଞ୍ଜ କିଶୋର କାନୁନ୍‌ଗୋ



ବସନ୍ତକାଳର କଅଁଳ ସକାଳ । ବଗିଚାରେ ଫୁଟିଥିଲା ଗୋଟିଏ ନାଲି ଗୋଲାପ ଫୁଲ । ଗୋଟିଏ ମହୁମାଛି ଗୁଣୁଗୁଣୁ ଗୀତ ଗାଇ ଗାଇ ଆସି ଗୋଲାପ ଫୁଲ ଉପରେ ବସିଲା । ତାପରେ ଗୋଟିଏ ରଙ୍ଗରଙ୍ଗିଆ ପ୍ରଜାପତି ଆସି ପହଞ୍ଚିଲା । ମହୁମାଛି କହିଲା, "ଗୋଲାପ ଫୁଲ, ପହିଲେ ମୁଁ ଆସିଚି, ମତେ ପ୍ରଥମେ ମହୁ ଦେ ।"

ପ୍ରଜାପତି କହିଲା—"ଗୋଲାପ ରାଣୀ, ମୁଁ କେଡ଼େ ସୁନ୍ଦର ! ମୁଁ ତତେ ଭଲ ପାଏ । ମତେ ଆଗ ମହୁ ଦେ ! ମୁଁ ତତେ ଭଲ ପାଏ । ମତେ ଆଗ ମହୁ ଦେ !"

ପ୍ରଜାପତି ଏ କଥା କହୁଣୁ ନ କହୁଣୁ, କେଉଁଠି ଥିଲା ଗୋଟାଏ କାଳିଆ ଭଅଁର ଭଅଁ-ଭଅଁ ଗୀତ ଗାଇ ଗାଇ ଧାଇଁ ଆସିଲା । ଭଅଁର କହିଲା—ଏଁ, ତୁ ମୋଠାରୁ ଏଡ଼େ ସୁନ୍ଦର ? ମୁଁ ସମସ୍ତଙ୍କଠୁଁ ବଳି ଅଧିକ

ଭଲପାଏ ଗୋଲାପଗଛଣୀକୁ । 'ଗୋଲାପଗଛଣୀ, ଗୋଲାପଗଛଣୀ, ମତେ ଆଗ ମହୁ ଦେ ।'

କିଏ ଆଗ ଗୋଲାପଫୁଲ ସାଙ୍ଗରେ ଖେଳିବ, କିଏ ପଛରେ ଗୋଲାପ ଫୁଲରୁ ମହୁ ପିଇବ, ଏ ବିଷୟ ନେଇ ତିନିଜଣଙ୍କ ମଧ୍ୟରେ କଳି ଲାଗିଲା ।

ମହୁମାଛି କହିଲା— (ମୁଁ) ନାଲି ଗୁଲୁ ଗୁଲୁ ମହୁମାଛି,
ମୋଠାରୁ ସୁନ୍ଦର କିଏ ଅଛି ?
ଆସିଅଛି ଆଜି ମୁହିଁ ଆଗ,
ପଛରେ ତୁହିଁ କି ମୋର ଭାଗ ।

ପ୍ରଜାପତି କହିଲା— ରଙ୍ଗରଙ୍ଗିଆ ମୁଁ ପ୍ରଜାପତି,
ସାରା ଧରଣୀରେ ସୁରୁ ଅତି ।
ରୂପରେ ସବୁଠୁଁ ବଡ଼ ଯେଣୁ,
ପଛରେ ମୋହର ଭାଗ ତେଣୁ ।

ତହୁଁ ରାଗିଯାଇ ଭଅଁର କହିଲା—କଳା ମଚମଚ ମୁହିଁ ଅଳି,
ରୂପ କି ତମର ମୋଠୁଁ ବଳି ?
ଫୁଲରେ ଅଧିକ ଭଲପାଏ,
ପଛରେ ତେଣୁ ମୋ ଭାଗ ଥାଏ ।

ମହୁମାଛି, ପ୍ରଜାପତି ଓ ଭଅଁର ଏହିପରି କଳିକଜିଆ ଲଗେଇବାରୁ ଗୋଲାପଫୁଲ ବିଚଳିତ ହୋଇପଡ଼ିଲା । ଗୋଲାପଫୁଲ କହିଲା—ମୁଁ ତମ ତିନିଜଣଙ୍କୁ ଭଲପାଏ । ତମେମାନେ ପ୍ରତ୍ୟେକ କହୁଛ, ଆଗ ମୋ ସଙ୍ଗେ ଖେଳିବ, ଆଗ ମୋଠାରୁ ମହୁ ନେବ । ତେବେ ମୁଁ କାହାକୁ ଆଗ ମହୁ ଦେବି, କାହାକୁ ବା ପଛ ଦେବି ? ସମସ୍ତେ ତ ମୋର ଆପଣାର । ତେଣୁ ତମ ତିନିଜଣଙ୍କ ମଧ୍ୟରେ ଯେ ସବୁଠୁଁ ଅଧିକ ସୁନ୍ଦର, ପ୍ରଥମେ ମୋଠାରୁ ମହୁ ପିଇବା ପାଳି ତା'ର ।

ସମସ୍ତେ ସମସ୍ୱରରେ କହିଲେ—ହଁ, ହଁ, ଠିକ୍ କଥା । ତାହା ହେଉ । ଆଚ୍ଛା ଗୋଲାପଗଛଣୀ, ତମେ ବିଚାର କରି କହ, କିଏ ଆମମାନଙ୍କ ମଧ୍ୟରେ ଅଧିକ ସୁନ୍ଦର ?

ଗୋଲାପଫୁଲ ବଡ଼ ହଟହଟାରେ ପଡ଼ିଗଲା । ସେ ଭାବିଲା, କାହାକୁ ସବୁଠୁଁ ଅଧିକ ସୁନ୍ଦର ବୋଲି କହିବ ? ରୂପରେ ଏକୁ ଆରେକ ବଳିଯିବାର । ନାଲି ଗୁଲୁ ଗୁଲୁ ମହୁମାଛି ସତେ କି ସୁନ୍ଦର ! ତା'ର ଗୁଣୁଗୁଣୁ ଗୀତରେ ମୁଁ ମୁଗ୍ଧ ହୁଏ । ରଙ୍ଗରଙ୍ଗିଆ ପ୍ରଜାପତି ରୂପ ଅତି ମନୋରମ । ଅନୁପମ ସୌନ୍ଦର୍ଯ୍ୟ ତା'ର । ଝିଲମିଲି ଜରିଡେଣା । ସତେ କି ସୁନ୍ଦର ଦିଶେ ପ୍ରଜାପତି ମୋର ଗୋଲାପି ଶେଯରେ ବସି ମହୁ ପିଇଲାବେଳେ ! କିନ୍ତୁ ଆହୁରି ମାନେ, ଆହୁରି ଅଧିକ ଭଲଲାଗେ କଳା ମଚ ମଚ କାଳିଆ ଭଅଁର ବସେ ଯେବେ ମୋର ଗୋଲାପି ଶେଯରେ । ମୋ ପାଖେ ଅଳି ଅଳିକରେ ମଧୁ ଲାଗି—ଉଡ଼ିବୁଲେ ମୋ ଚାରିପାଖେ । ମୋ ସଙ୍ଗରେ କେତେ ରଙ୍ଗରେ ଖେଳେ ସେ । ଭାରି ଭଲଲାଗେ ମତେ ତା ସଙ୍ଗେ ଖେଳିବାକୁ । ସତେ କେତେ ମିଠା ତା'ର ଗୁଞ୍ଜନ । ତେବେ ଏ ତିନିଜଣଙ୍କ ମଧ୍ୟରେ ସବୁଠୁଁ ସୁନ୍ଦର କିଏ ? ଭଅଁର ? ପ୍ରଜାପତି ?? ମହୁମାଛି ??? କିଏ ସବୁଠୁଁ ସୁନ୍ଦର ? କାହାକୁ ଅଧିକ ସୁନ୍ଦର ବୋଲି କହିବ ? ସମସ୍ତେ ତ ମୋର ଆପଣାର । ନା, ନା, ମୁଁ ଏକଥା ବିଚାର କରିପାରିବ ନି ।

ଭାବି ଭାବି ଗୋଲାପ ଫୁଲର ମଥା ଘୂରିଗଲା । କିଛି ସମୟ ପରେ ତାକୁ ଗୋଟିଏ ବୁଦ୍ଧି ଦେଖାଗଲା । ସେ କହିଲା—ତମେ ତିନିଜଣଯାକ ପ୍ରତ୍ୟେକ ମତେ ସୁନ୍ଦର ଦେଖାଯାଉଛ । କିଏ ତମମାନଙ୍କ ଭିତରେ ସବୁଠୁଁ ଅଧିକ ସୁନ୍ଦର ମୁଁ ବିଚାର କରି କହିପାରିବନି । ତମେମାନେ ଯାଅ, ଆମ ଏ ଦେଶର ରଜାପୁଅ ଅତନୁକୁମାରଙ୍କ ପାଖକୁ । ସେ ଯାହାକୁ ସୁନ୍ଦର କହିବେ ସେ ଆଜିକାର ପ୍ରତିଯୋଗିତାରେ ଜିଣିବ ଏବଂ ମୋଠାରୁ ପହିଲି ପ୍ରଥମେ ମହୁ ପିଇବା ପାଳି ତା'ର ।

ସେ ତିନିଜଣ ଗୋଲାପ ଫୁଲର ଏ କଥା ଶୁଣି ରଜାଙ୍କ ଉଆସକୁ ଉଡ଼ିଗଲେ । ରଜାପୁଅ ଅତନୁକୁମାରଙ୍କ ପାଖରେ ପହଞ୍ଚିଲେ । ତାଙ୍କୁ ସବୁ ଘଟଣା ଜଣାଇ ସମସ୍ୱରରେ ପଚାରିଲେ କହିଲେ—

ରଜାପୁଅ ଆହେ ରଜାପୁଅ,
ସବୁଠୁଁ ସୁନ୍ଦର କିଏ କୁହ ?

ଅତନୁକୁମାର କହିଲେ—ତମ ତିନିଜଣଙ୍କ ମଧ୍ୟରେ କିଏ ସବୁଠାରୁ ସୁନ୍ଦର ମୁଁ ଯଥାଯଥ ବିଚାର କରି କହିପାରିବନି । ତେବେ ସିଏ ଠିକ୍

କହିପାରିବ ମୁଁ ତାର ଠିକଣା ବତେଇଦେବି । କିନ୍ତୁ ତମେମାନେ ଏତେ ବାଟ ଯାଇ ପାରିବ ତ ?

ତିନିହେଁ କହିଲେ—ହଁ ଆଜ୍ଞା ! କୁହନ୍ତୁ କୁହନ୍ତୁ ! ଯେତେଦୂର ହେଉ ପଛକେ ଆମେମାନେ ଯିବୁ । ଅତନୁକୁମାର କହିଲେ—ଦକ୍ଷିଣ ଦିଗରେ ସାତ 'ଦରିଆ ତେର ନଈ ପାରି ହୋଇ ଗଲେ ରୂପନଗରୀ ବୋଲି ଗୋଟିଏ ରାଜ୍ୟ ପଡ଼ିବ । ସେ ଦେଶରେ ସମସ୍ତେ ଦେଖିବାକୁ ସୁନ୍ଦର । ତେଣୁ ସୌନ୍ଦର୍ଯ୍ୟର ମୂଲ୍ୟ ସେମାନେ ଜାଣନ୍ତି । ସେହି ଦେଶର ରଜା ଅତି ନ୍ୟାୟବନ୍ତ ଲୋକ । ସେ ନିଶ୍ଚୟ ନ୍ୟାୟବିଚାର କରି ତମ ତିନିଜଣଙ୍କ ମଧ୍ୟରେ କିଏ ସବୁଠୁଁ ଅଧିକ ସୁନ୍ଦର କହିଦେବେ । ସେ ଯାହାକୁ ସବୁଠୁଁ ସୁନ୍ଦର ବୋଲି କହିବେ, ମୁଁ ତାକୁ ସବୁଠୁଁ ସୁନ୍ଦର କହିଲି ବୋଲି ଧରିନିବ । କାରଣ ମୁଁ ଜାଣେ ସେ ଠିକ୍ ନ୍ୟାୟ ବିଚାର କରନ୍ତି ।

ତିନିହେଁ ଉଡ଼ି ଉଡ଼ି ସାତ ଦରିଆ ତେର ନଈ ପାରି ହୋଇ ରୂପ-ନଗରରେ ପହଞ୍ଚିଲେ । ରୂପନଗରରେ ପହଞ୍ଚି ସେମାନେ ଦେଖିଲେ ସେଠାରେ ଗଛଲତା, ପଶୁପକ୍ଷୀ, ବନ, ପାହାଡ଼, ନରନାରୀ ସମସ୍ତେ ଖୁବ୍ ସୁନ୍ଦର । ଚାରିଆଡ଼େ ଫୁଲର ମହକ । କିନ୍ତୁ ସେ ନଗରରେ ପ୍ରଜାପତି, ଭଅଁର କିମ୍ବା ମହୁମାଛି ଶ୍ରେଣୀୟ କୀଟପତଙ୍ଗ ନାହାନ୍ତି । ସେମାନେ ଯାଇ ରାଜସଭାରେ ପହଞ୍ଚିଲେ । ରଜାଙ୍କ ଆଗରେ ମୂଳରୁ ସବୁ ଘଟଣା ଜଣେଇ ନ୍ୟାୟ ବିଚାର ଲାଗି ପ୍ରାର୍ଥନା କଲେ ।

ରାଜା କହିଲେ—ଆମ ଦେଶରେ ସମସ୍ତେ ଦେଖିବାକୁ ଖୁବ୍ ସୁନ୍ଦର ଏ କଥା ତମେମାନେ ଜାଣିଚ ?

ସେମାନେ କହିଲେ—ହଁ ମହିମା, ତା ତ ଆମେମାନେ ଦେଖି ବିସ୍ମିତ ହେଉଛୁ । ଆପଣଙ୍କ ଦେଶର ଗଛଲତା, ପଶୁପକ୍ଷୀ, ଫୁଲଫଳ ଓ ନରନାରୀଙ୍କର ଅନୁପମ ସୌନ୍ଦର୍ଯ୍ୟ ଦେଖି ଆମେମାନେ ଲଜ୍ଜିତ ହେଉଛୁ । ତଥାପି ଆମ ତିନିଜଣଙ୍କ ଭିତରେ ସବୁଠୁଁ ସୁନ୍ଦର କିଏ ତା ରୂପନଗରର ରଜାହିଁ ବିଚାର କରିବାକୁ ସମର୍ଥ ।

ରଜା କହିଲେ—ମୋର ଝିଅ 'ଅନୁପମା,' ଏ ଦେଶର ରାଜକୁମାରୀ ହେଉଛି ଆମ ନଗରରେ ଶ୍ରେଷ୍ଠସୁନ୍ଦରୀ । ତାକୁ ତମ ଭିତରୁ ଯେ ରୂପରେ ପରାସ୍ତ କରିବ ସେ ହେବ ତମ ତିନିଜଣଙ୍କ ମଧ୍ୟରେ ସବୁଠାରୁ ବେଶି ସୁନ୍ଦର ।

ସେମାନେ କହିଲେ—ଆଜ୍ଞା, ଆପଣ ତ ବୁଢ଼ା ହେଲେଣି; ତେବେବି ଏଡ଼େ ସୁନ୍ଦର ଯେ ଆପଣଙ୍କ ରୂପ ପାଖରେ ଆମମାନଙ୍କ ମଥା ନଇଁପଡ଼ୁଛି । ଆଜି ଆମେ ସର୍ବଶ୍ରେଷ୍ଠ ସୁନ୍ଦରୀ ରାଜକୁମାରୀ 'ଅନୁପମା'ଙ୍କୁ ରୂପରେ କପର ପରାସ୍ତ କରିବୁ ?

ରଜା କହିଲେ—ହଁ, ତମମାନଙ୍କ ମଧ୍ୟରୁ ଯିଏ ହେଲେ ଜଣେ ନିଶ୍ଚୟ ଜିଣିବ, ମୋର ଏ ବିଶ୍ୱାସ ଅଛି । କାରଣ ରାଜକୁମାରୀ ଅନୁପମା ବର୍ତ୍ତମାନ ପୀଡ଼ିତା । ବସନ୍ତ ହେଲା ବେଗରେ ପଡ଼ି ମୋ ଝିଅର ରୂପ ମଳିନ ପଡ଼ିଯାଇଛି ।



ସେମାନେ କହିଲେ—ଆପଣ ବିଶ୍ବରପତି । ଆପଣ ଯାହା ଆଦେଶ କରିବେ ତା' ପାଳନ କରିବା ଆମର କର୍ତ୍ତବ୍ୟ ।

ରାଜା କହିଲେ—ହଁ, ତମେମାନେ ମୋ ସଙ୍ଗରେ ଅନ୍ତଃପୁରକୁ ଆସ ।

ରଜାଙ୍କ ସଙ୍ଗରେ ସେମାନେ ଅନ୍ତଃପୁରକୁ ଗଲେ । ରାଣୀମହଲରେ ରାଜକୁମାରୀ ଅନୁପମା ସୁନାପଲଙ୍କରେ ଶୋଇଥିଲେ । ମହାରାଣୀ ଝିଅ ପାଖରେ ବସି ଝିଅର ଦେହରେ ହାତ ବୁଲାଇ ଆଉଁସୁଥାନ୍ତି । ଦାସୀ ଓ ପରିଚାରିକାମାନେ ବୋଲହାକ କରିବାରେ ବ୍ୟସ୍ତଥାନ୍ତି । ରଜା ସେମାନଙ୍କୁ ସଙ୍ଗରେ ନେଇ ସେଠାରେ ପହଞ୍ଚିଲେ ।

ସେମାନେ ରାଜକୁମାରୀ ଅନୁପମାଙ୍କର ଅନୁପମ ରୂପ ଦେଖି ଅତିଶୟ ଲଜ୍ଜିତ ହେଲେ । ସେମାନଙ୍କର ରୂପ ଗର୍ବ ଛୁଏଁ ଛୁଏଁ ଉଭେଇଗଲା । ରୋଗରେ ପଡ଼ି ରାଜକୁମାରୀଙ୍କ ରୂପ କେତେକ ପରିମାଣରେ ମଳିନ ପଡ଼ି ଯାଇଥିଲେ ମଧ୍ୟ ତାଙ୍କ ରୂପର ଝଲକରେ ସେ ଘର ଝଲକି ଉଠୁଥିଲା । ସେମାନେ ରଜାଝିଅଙ୍କୁ ଦେଖି ଅତି ମୁଗ୍ଧ ହୋଇ କହିଲେ—ମହାରାଜ, ଆମମାନଙ୍କର ଭାଗ୍ୟ ଆମେ ସାରାସୃଷ୍ଟିର ଶ୍ରେଷ୍ଠସୁନ୍ଦରୀ ଅନୁପମାଙ୍କୁ ଦେଖିଲୁ । ତାଙ୍କୁ ରୂପରେ ପରାସ୍ତ କରିବାକୁ ଆମେ ସମସ୍ତେ ଅକ୍ଷମ । ଆମମାନଙ୍କର ନିଜ ନିଜର ରୂପଗର୍ବ ବର୍ତ୍ତମାନ ଖର୍ବ ହୋଇଛି । ଆମମାନଙ୍କର ଅହଂକାର ଉଭେଇ ଯାଇଛି । ଆମ ଗୋଲାପ ରାଣୀଠୁଁ ରାଜକୁମାରୀ ଅନୁପମା ଅଧିକ ସୁନ୍ଦରୀ । ରାଜକୁମାରୀ ଅନୁପମା ପରୀରାଇଜର ଶ୍ରେଷ୍ଠ ପରୀ ବୋଧହୁଏ । କିମ୍ବା ଅଭିଶପ୍ତା ଦେବକନ୍ୟା ମର୍ତ୍ତ୍ୟରେ ଜନ୍ମିଛନ୍ତି । ଆମେ ତାଙ୍କ ସହିତ ସୌନ୍ଦର୍ଯ୍ୟରେ କି ପ୍ରତିଯୋଗିତା କରିବୁ ?

ରାଜା କହିଲେ—ତମମାନଙ୍କ ମନରୁ ବର୍ତ୍ତମାନ ଗର୍ବ, ଅହଂକାର ଉଭେଇଯାଇଚି । ଏଇଟା ନ୍ୟାୟ ବିଚାର କରିବାର ଠିକ୍ ବେଳ । ତମମାନଙ୍କ ମଧ୍ୟରୁ କେହି ଜଣେ ହେଲେ ମୋ ଝିଅଠୁଁ ଅଧିକ ସୁନ୍ଦର ନୁହ ସତ, କିନ୍ତୁ ତମ ତିନିଜଣଙ୍କ ଭିତରେ ସିଏ ହେଲେ ତ ଜଣେ ସବୁଠୁଁ ଅଧିକ ସୁନ୍ଦର ? ତମେମାନେ ଏତେ ବାଟ ମୋ ପାଖକୁ ଧାଇଁଆସିଚ, ମୁଁ ନିଶ୍ଚୟ ନ୍ୟାୟ ବିଚାର କରିବି । ତେବେ କହୁଚି ଶୁଣ !

ସୁନ୍ଦର କେବଳ ତାକୁ କୁହାଯାଏ ଯେ ରୂପ ଓ ଗୁଣ ଉଭୟରେ ସୁନ୍ଦର । ଯାହାର ବାହାର ଓ ଭିତର ଉଭୟ ସୁନ୍ଦର । ମହାକାଳ ଫଳର ବାହାର କେଡ଼େ ସୁନ୍ଦର । କିନ୍ତୁ ତାର ଭିତର ପୋଡ଼ା ଅଙ୍ଗାର । ତେଣୁ ତାକୁ କେହି ସୁନ୍ଦର ବୋଲି କହନ୍ତି ନାହିଁ । ତମେମାନେ ତ ଫୁଲକୁ ଭଲପାଅ ? ଆଚ୍ଛା କହିଲ, ପଳାଶ ସୁନ୍ଦର ନା ଗୋଲାପ ସୁନ୍ଦର ?

ଭିନହେଁ ସମସ୍ୱରରେ କହିଲେ—ଗୋଲାପ ସୁନ୍ଦର ।

ରଜା କହିଲେ—ଗୋଲାପଫୁଲକୁ କାହିଁକି ସୁନ୍ଦର ବୋଲି କହୁଛ ? ପଳାଶ ଦେଖିବାକୁ ଗୋଲାପଠୁଁ ଅଧିକ ଲାଲ ଓ ବେଶି ସୁନ୍ଦର । ତମେ-ମାନେ ଗୋଲାପଫୁଲକୁ ଖାଲି ଭଲ ପାଅ ବୋଲି ଏକଥା କହୁଛ ନା କଣ ?

ଭିନହେଁ କହିଲେ—ଗୋଲାପଫୁଲରେ ମହୁ ଅଛି । ପଳାଶ ଫୁଲରେ ମହୁ ନାହିଁ । ଗୋଲାପର ସୁବାସ ଅଛି । ପଳାଶର ଗନ୍ଧ ନାହିଁ । ଗୋଲାପଫୁଲର ରୂପ ସୁନ୍ଦର ହୋଇଥିବାରୁ ଓ ସୁରଭି ଥିବାରୁ ଲୋକେ ଗୋଲାପକୁ ସୁନ୍ଦର ବୋଲି କୁହନ୍ତି । ଗୋଲାପକୁ ଫୁଲରାଣୀ ବୋଲି ମଧ୍ୟ କୁହାଯାଏ । କିନ୍ତୁ ପଳାଶ ବାସହୀନ ହୋଇଥିବାରୁ ଲୋକେ ତାକୁ ଘୃଣା କରନ୍ତି ।

ରଜା କହିଲେ—ଠିକ୍ କହିଛ । ତମେ ଭିନହେଁ ରୂପରେ ସୁନ୍ଦର । ତେଣୁ ରୂପରେ ସବୁଠୁଁ କିଏ ସୁନ୍ଦର କହି ହେବନି । ଅବଶ୍ୟ କେତେକ ଲୋକ ପ୍ରଜାପତିକୁ ରୂପରେ ଅଧିକ ସୁନ୍ଦର ବୋଲି କହିପାରନ୍ତି । କିନ୍ତୁ ନାନା ଦିଗରୁ ବିଚାର କଲେ ଏହା ଗ୍ରହଣୀୟ ନୁହେଁ । ଯିଏ ତମ ଭିନଜଣଙ୍କ ମଧ୍ୟରେ ଗୁଣରେ ସବୁଠୁଁ ଶ୍ରେଷ୍ଠ ହେବ, ସେହିଁ ସବୁଠୁଁ ଅଧିକ ସୁନ୍ଦର ବୋଲି ମୋ ନ୍ୟାୟ ବିଚାର କୁହେ । କାରଣ ସୌନ୍ଦର୍ଯ୍ୟର ଦୁଇଟି ଉପାଦାନ —ରୂପ ଓ ଗୁଣ ।

ଭିନହେଁ କହିଲେ—ତା’ ହେଲେ କୁହନ୍ତୁ କିଏ ଆମ ଭିତରେ ସବୁଠୁଁ ଅଧିକ ସୁନ୍ଦର ?

ରାଜା କହିଲେ—ନା, ମୁଁ ମୋର ବ୍ୟକ୍ତିଗତ ମତ ଦେଇ କାହିଁକି କାହାକୁ ଭଲ ବା କାହାକୁ ମନ୍ଦ କହିବି ? ତମମାନଙ୍କର ଗୋଟାଏ ପରୀକ୍ଷା ହେବ । ଯେ ସେ ପରୀକ୍ଷାରେ କୃତକାର୍ଯ୍ୟ ହେବ ସେହିଁ ଶ୍ରେଷ୍ଠ ପ୍ରମାଣିତ ହେବ । ଆଚ୍ଛା, ତମେମାନେ ସମସ୍ତେ ତ ଫୁଲରୁ ମହୁ ପିଅ ?

ଭିନଜଣଯାକ କହିଲେ—ଆଜ୍ଞା ହଁ ।

ରଜା କହିଲେ—ମୋର ଝିଅ ଅନୁପମା ବହୁଦିନରୁ ରୋଗରେ ପୀଡ଼ିତା ଅଛି । ଆମ ରାଜ୍ୟର ବୈଦ୍ୟରାଜ କହିଛନ୍ତି, ଫୁଲର ମହୁ ପିଇଲେ

ଅନୁପମା ଆରୋଗ୍ୟଲାଭ କରିବେ । ତମେମାନେ ଯାଅ, ଫୁଲରୁ ମହୁ ଆଣ । ତମ ତିନିଜଣଙ୍କ ମଧ୍ୟରୁ ଯିଏ ଉପଯୁକ୍ତ ପରିମାଣର ମହୁ ଆଗ ଆଣି ଦେଇପାରିବ ସେ ସବୁଠାରୁ ସୁନ୍ଦର ବୋଲି ପ୍ରମାଣିତ ହେବ ।

ମହୁମାଛି, ଭଅଁର ଓ ପ୍ରଜାପତି ତିନିହେଁ ଏକଥା ଶୁଣି ଫୁଲରୁ ମଧୁପାନ କରିବାରେ ଲାଗି ପଡ଼ିଲେ । ମହୁମାଛି ନାନା ଫୁଲରୁ ମହୁ ଆହରଣ କଲା । ରାଜସଭାର ଗୋଟିଏ ବିରାଟ ପଥର ଖମ୍ବର ଅଗ୍ରଭାଗରେ ବସାବାନ୍ଧି ମହୁଫେଣାରେ ମହୁ ସଂଗ୍ରହ କରି ରଖିଲା । ଭଅଁର ଓ ପ୍ରଜାପତି ସେମିତି ନାନା ଫୁଲର ମହୁ ପିଇଲେ । ସେ ଦୁହେଁ ମନେ ମନେ ଭାବିଥିଲେ ବହୁ ପରିମାଣର ମହୁ ପିଇ ରଜାଙ୍କ ପାଖରେ ବାନ୍ତିକରି ମହୁ ଦେବେ । କିନ୍ତୁ ସେ ଦିହେଁ ଯେତେ ମହୁ ପିଅନ୍ତି ସବୁତକ ମହୁ ତାଙ୍କ ପେଟରେ ହଜମ ହୋଇଯାଏ । ଯେତେ ବାନ୍ତି କଲେ ବି ମହୁ ବାହାରେ ନି । ସେ ଦୁହେଁ ବାନ୍ତି କରିବା ଅଭ୍ୟାସରେ ଲାଗି ପଡ଼ିଥାନ୍ତି । ଏହିପରି କେତୋଟି ଦିନ ବିତିଗଲା । ମହୁମାଛି ମହୁଫେଣାରେ ଯଥେଷ୍ଟ ମହୁ ସଂଗ୍ରହ କରି ରଖିଲାଣି । ତହୁଁ ସେ ଯାଇ ରଜାଙ୍କ ଫୁଲବଗିଚାରେ ଭଅଁର ଓ ପ୍ରଜାପତିକୁ କହିଲା—ମୁଁ ଯାଉଛି ରଜାଙ୍କୁ ମହୁ ଦେବି । ଏହା କହି ସେ ରାଜସଭା ଆଡ଼କୁ ଉଡ଼ିଗଲା । ପ୍ରଜାପତି ଓ ଭଅଁର ମଧ୍ୟ ସଙ୍ଗେ ସଙ୍ଗେ ରାଜସଭାକୁ ଉଡ଼ିଗଲେ ।

ଭଅଁର କହିଲା—ମହାରାଜ, ମତେ ଗୋଟିଏ ପାତ୍ର ଦିଅନ୍ତୁ, ମୁଁ ମହୁ ଦେବି । ପ୍ରଜାପତି ମଧ୍ୟ ସେୟା କହିଲା । ସେ ଦୁଇଜଣଙ୍କୁ ଦୁଇଟି କାଚପାତ୍ର ଦିଆଗଲା ।

ରଜା ମହୁମାଛିକୁ କହିଲେ— ତମର ପାତ୍ର ଦରକାର ନାହିଁ ?

ମହୁମାଛି ଖମ୍ବରେ ଥିବା ତାର ମହୁଫେଣାକୁ ଉଡ଼ିଯାଇ ସେଠାରେ ରହି କହିଲା—ମୋର ମହୁତକ ଏଇଠି ମୁଁ ସାଇତି ରଖିଛି ।

ପ୍ରଜାପତି ଓ ଭଅଁର ଦୁହେଁ ନିଜ ନିଜର କାଚପାତ୍ରରେ ବସି ଯେତେ ଚେଷ୍ଟାକଲେ ମଧ୍ୟ ବାନ୍ତିକରି ପେଟରୁ ମହୁ ବାହାର କରିପାରିଲେ ନାହିଁ ।

ମହୁମାଛି କହିଲା—ମହାରାଜ, ମୋର ଏହି ମହୁଫେଣାରେ ମୁଁ ଫୁଲରୁ ମହୁ ସଂଗ୍ରହ କରି ଆଣି ଯଥେଷ୍ଟ ପରିମାଣରେ ରଖିଛି । ଆପଣଙ୍କର ଯେତେ ମହୁ ଦରକାର, ଏହି ଫେଣା ଭାଙ୍ଗି ତାକୁ ଚିପୁଡ଼ି ନିଅନ୍ତୁ ।

ଏହା କହି ସେ ଖମ୍ବର ମହୁଫେଣାରୁ ଉଡ଼ିଆସି ରାଜସଭାରେ ବସିଲା । ରାଜା ସୈନ୍ୟଙ୍କୁ ଆଦେଶ ଦେଲେ—ମହୁମାଛିର ମହୁଫେଣା ଭାଙ୍ଗି ମହୁ ଆଣିବାକୁ । ସୈନିକଟି ମହୁଫେଣା ଭାଙ୍ଗି ଏକ କାଚ ପାତ୍ରରେ ଫେଣାକୁ ଚିପୁଡ଼ିଲା । ରାଜସଭାରେ ସମସ୍ତେ ଦେଖିଲେ ମହୁମାଛିର ମହୁଫେଣାରୁ ବଡ଼ ବୋତଲରେ ବୋତଲେ ମହୁ ବାହାରିଲା । ସେ ମହୁରୁ ଆବଶ୍ୟକୀୟ ପରିମାଣ ଔଷଧରେ ମିଶାଇ ରାଜକୁମାରୀ ଅନୁପମାଙ୍କୁ ଖାଇବାକୁ ଦିଆଗଲା । ତାକୁ ଖାଇ ରାଜକୁମାରୀ ଆରୋଗ୍ୟ ଲାଭ କଲେ । ଏଥିରେ ସମସ୍ତେ ଖୁବ୍ ଖୁସି ହେଲେ । ମହୁମାଛିକୁ ଧନ୍ୟ ଧନ୍ୟ କହିଲେ ।

ରାଜା କହିଲେ—ପ୍ରତିଯୋଗିତାରେ ମହୁମାଛି ଜିଣିଲା । ତେଣୁ ତମ ତିନିଜଣଙ୍କ ମଧ୍ୟରେ ମହୁମାଛି ସବୁଠୁଁ ଅଧିକ ସୁନ୍ଦର । ପରହିତ ଲାଗି, ଜଗତର କଲ୍ୟାଣ ଲାଗି ମହୁମାଛି ଫୁଲରୁ ମହୁ ସଂଗ୍ରହ କରେ । ନ୍ୟାୟତଃ ସବୁଠୁଁ ଅଧିକ ସୁନ୍ଦର ମହୁମାଛି । ତେଣୁ ସେ ପରିଲେ ଗୋଲାପଫୁଲରୁ ମହୁପାନ କରିବ ।



# ଦୁଇଟି ରଙ୍ଗ

ଡ. ସ୍ୱପ୍ନଲତା ମହାନ୍ତି



ନରପୁର ଗାଁର ହରବାବୁ ଅନେକ ଧନର ମାଲିକ । କୋଠାବାଡ଼ି ବାଗ ବଗିଚା ଧାନ ଜମି କୋଉଁଥିରେ ତାଙ୍କର ଅଭାବ ନାହିଁ । ଏତେ ଧନ ଥାଇ ମଧ୍ୟ ଆହୁରି ଧନ ପାଇଁ ତାଙ୍କର ଲୋଭ । କାହାରି ଦୁଃଖ ଦେଖି ବିପଦବେଳେ ତାଙ୍କୁ ସାହାଯ୍ୟ କରିବା ତାଙ୍କ ଜାତକରେ ନାହିଁ । ହେଲେ ସ୍ତ୍ରୀ ମନୋରମା ଓ ପୁଅ ମନୋଜ ତାଙ୍କର ଏ ବୁଦ୍ଧିକୁ ଜମାରୁ ପସନ୍ଦ କରନ୍ତି ନାହିଁ ।

ହରିବାବୁ ସେଦିନ ନାହିଁ କରୁ କରୁ ଶୀତରେ ଥରି ଥରି ଭିକାରି ପିଲାଟି ଭିକ ମାଗିଲା ବେଳେ ମନୋଜ ତାର ଜନ୍ମଦିନର ନୂଆ ଜାମାଟି ଦେହରୁ କାଢ଼ି ଦେଇଦେଲା । ଓଲଟି କହିଲା, "ବାପା ! ମୋର ତ କୋଟ୍, ସାର୍ଟ, ସୁଏଟର କେତେ ଅଛି । ତା'ର ତ କିଛି ନାହିଁ । ଦେଖନ୍ତୁ ସେ କେମିତି ଶୀତରେ ଥରୁଛି ।"

ହରିବାବୁ କହିଲେ, "ଦେଲୁ ସବୁ ପୁରୁଣାଟାଏ ଦେଲୁ ନାହିଁ ? ନୂଆଟାକୁ କାଲି ପିନ୍ଧି ପିନ୍ଧି ଆଜ ଦେଇଦେଲୁ ।"

ମନୋଜ କହିଲା, "ପୁରୁଣାଟାଏ ଦେଇ ଲାଭ କଣ ? ଦିଥର ପିନ୍ଧିଥିବ କି ନାହିଁ ଚିରିଯିବ । ପୁଣି ଘୋର ଶୀତକୁ ସେଇ ଶୀତ ଭୋଗିବ । ତେଣୁ ମୁଁ ଜାଣି ଜାଣି ନୂଆଖଣ୍ଡ ଦେଇଛି ।"

ଦିନେ ବର୍ଷା ହେଉଥାଏ, ବାଟରେ ଭିଜିଭିଜି ପଢ଼ାବହିଗୁଡ଼ିକୁ ସାର୍ଟ ତଳେ ଘୋଡ଼େଇ ମନୋଜ ଘରେ ପହଞ୍ଚିଲା । ମା' ପଚାରିଲେ, "କିରେ ମନୋଜ, ବର୍ଷାରେ ଓଦା ସର ସର ହୋଇଚୁ ଯେ, ତୋ ଛତା କାହିଁ ? ପୁଣି ବହିଗୁଡ଼ାକ ସାର୍ଟ ତଳେ ଜାକି ଆଣିଚୁ । ପଲିଥିନ୍ ବ୍ୟାଗ୍ କୁଆଡ଼େ ଗଲା ? ଏତେ ଓଦା ହେଲୁ, ତତେ ଜର ହେବ ନାହିଁ ?"

ମନୋଜ ଓଦା ଦେହ ପୋଛୁ ପୋଛୁ ହସି ହସି କହିଲା, "ମା, ମତେ ଜର ହେଲେ ଡାକ୍ତର ଆସିବେ, ଔଷଧ ଦେବେ । ତୁମେ ମୋର କେତେ ସେବାଯତ୍ନ କରିବ । ମୁଁ ଭଲ ହୋଇଯିବି । କିନ୍ତୁ ଯେଉଁ ଭିକାରୀଟି ବର୍ଷାରେ ଓଦା ହୋଇ ଯାଇଥିଲା, ତାକୁ ଜର ହେଲେ କିଏ ତାର ଯତ୍ନ ନେବ ? ସେଥିପାଇଁ ଭିକାରୀଟିକୁ ମୁଁ ମୋର ଛତା ଦେଇ ଆସିଛି । ଆଉ ମୋ ପଲିଥିନ୍ ବ୍ୟାଗ୍ ତାକୁଇ ଦେଇଚି, କାରଣ ଦେଖିଲି କନାରେ ବନ୍ଧାହୋଇ ରହିଥିବା ତାର ଭିକ ଚାଉଳ ଗଣ୍ଡାକ ଭିଜି ଯାଉଛି । ତାକୁ ମୋବ୍ୟାଗ ଦେଇ କହିଲି—ବର୍ଷାବେଳେ ସେଇଥିରେ ଚାଉଳ ରଖିଲେ ଆଉ ଓଦା ହେବନାହିଁ । ଏ କଥା ଶୁଣି ସେ ଭାରି ଖୁସି ହେଲା ।"

ଶରତ ମନୋଜର ସାଙ୍ଗ, ଭାରି ଗରିବ ପିଲାଟିଏ । ତାର ବାପା ହରିବାବୁଙ୍କ ଘରେ ମୂଲଲାଗି ପୁଅକୁ ପାଠ ପଢ଼ାଏ । ଦୁଇ ସାଙ୍ଗଯାକ ଏକା ବର୍ଷକେ ମାଟ୍ରିକ୍ ପାସ୍ କଲେ । ଶରତର ବାପା କେତେ କାକୁତି ହୋଇ ହରିବାବୁଙ୍କୁ ଟଙ୍କା ଶହେଟି ମାଗିଲା । ପୁଅ ତାର କଲେଜରେ ନାଁ ଲେଖାଇବ । କିନ୍ତୁ ହରିବାବୁ ଶହେ ତ ଦୂରର କଥା, ଦଶଟି ଟଙ୍କା ମଧ୍ୟ ତାକୁ ଆଗୁଆ ମୂଲ ଦେଲେ ନାହିଁ । ବରଂ କହିଲେ, "ମୂଲିଆ ପୁଅ, ମୂଲ ନ ଲାଗି କଲେଜରେ ପଢ଼ିବ କଣ ?"

କିନ୍ତୁ ମନୋଜ ତାର ମାଆଙ୍କ ପାଖରୁ କିଛି ଟଙ୍କା ନେଇ ତାକୁ ସାହାଯ୍ୟ କଲା ।

ଏବେ ଶରତ କଲେଜରେ ନାଁ ଲେଖାଇଛି । ଷ୍ଟେସନ୍ ଦୋକାନଟିଏ ମଧ୍ୟ ଦେଇଛି । ଛନ ସାଗ ଦୋକାନରେ ଜିନିଷ ବିକିକରେ । ଯାହା ପାଏ ସେଥିରେ ଖାଇ ପିଇ ଚଳେ ଓ ରାତି କଲେଜରେ ପଢ଼େ । ଏତେ ଅସୁବିଧାରେ ବି ପିଲାଟିର ପାଠ ପଢ଼ିବାର ମନୋବୃତ୍ତି, ପରିଶ୍ରମ ଓ ଚେଷ୍ଟା ଦେଖି କଲେଜର ଅଧ୍ୟାପକ ଓ ଛାତ୍ରମାନେ ତା ଉପରେ ଭାରି ଖୁସି—ତାକୁ ସାହାଯ୍ୟ କରିବା ପାଇଁ ତା ଦୋକାନରୁ ସମସ୍ତ ଦରକାରି ଜିନିଷ କିଣନ୍ତି । ଫଳରେ ତାର ଦୁଇ ପଇସା ଲାଭ ହେଉଛି ଓ ସେ ସୁବିଧାରେ ପଢ଼ାପଢ଼ି କରିପାରୁଛି ।

ଗ୍ରୀଷ୍ମ ଛୁଟିରେ କଲେଜ ବନ୍ଦ । ସମସ୍ତେ ଘରକୁ ଯାଉଛନ୍ତି । ମନୋଜ ମଧ୍ୟ ଯାଇଛି । କିନ୍ତୁ ଶରତ ତା ଦୋକାନକୁ ଛାଡ଼ି ଯାଇପାରି ନାହିଁ ।

ରାତି ୯ଟା ହେବ । ହଠାତ୍ ତା ଦୋକାନ ପାଖରେ ଅଳ୍ପ କେତେ ଦୂରରେ କାର ଆକ୍‌ସିଡେଣ୍ଟ୍ ହେଲା । ସେତେବେଳକୁ ରାସ୍ତାରେ ଲୋକ ଯିବା ଆସିବା କମ୍ । କେବଳ କେତୋଟି ମାତ୍ର ଦୋକାନ ଖୋଲା । ଶରତ ଧାଇଁ ଯାଇ ଦେଖେ ତ ହରିବାବୁଙ୍କ ଗାଡ଼ି । ରକ୍ତର ସୁଅ ଛୁଟିଛି । ବାବୁ ଅଜ୍ଞାନ ହୋଇ ପଡ଼ିଛନ୍ତି ।

ସେ ଆଉ ବିଳମ୍ବ ନ କରି ଅନ୍ୟମାନଙ୍କ ସାହାଯ୍ୟରେ ତାଙ୍କୁ ନିଜ କାନ୍ଧ ଉପରକୁ ଉଠାଇ ନେଇ ଡାକ୍ତରଖାନାକୁ ଚାଲିଲା । ପାଖରେ ଯାହା-କିଛି ଟଙ୍କା ଥିଲା, ସେଇଥିରେ ଡାକ୍ତରଙ୍କ ପରାମର୍ଶ ଅନୁଯାୟୀ ଔଷଧ ଇଞ୍ଜେକ୍‌ସନ କିଣିଲା । ଯେତେବେଳେ ରକ୍ତ ଦେବା ଦରକାର ପଡ଼ିଲା, ସେ ନିଜ ଦେହରୁ ରକ୍ତ ଦେଲା । ହରିବାବୁଙ୍କୁ ମରଣ ମୁହଁରୁ ଫେରାଇ ଆଣିଲା ।

ତାର ପରଦିନ ୮ଟା ବେଳକୁ ହରିବାବୁଙ୍କ ଚେତା ଫେରି-ଆସିଲା । ଖବର ପାଇ ମନୋଜ ଓ ମନୋରମା ଆସି ସାରିଥିଲେ ।

ସେମାନଙ୍କଠାରୁ ସବୁକଥା ଶୁଣି ହରିବାବୁଙ୍କର ପଛ କଥା ମନେ ପଡ଼ିଲା । ଦୁଃଖ ଓ ଅନୁତାପରେ ତାଙ୍କ ଆଖିରୁ ଲୁହ ବହି ପଡ଼ିଲା । ଭାବିଲେ, ଯେଉଁ ଶରତକୁ ସେ ମୂଲିଆର ପୁଅ ବୋଲି ପରିହାସ କରିଥିଲେ ଆଜି ତାରି ଯୋଗୁ ସେ ପ୍ରାଣ ପାଇଲେ ।

ତାପରେ ଶରତକୁ ପାଖରେ ବସାଇ କହିଲେ—"ମନୋଜ ପରି ତୁ ମଧ୍ୟ ଆଜଠାରୁ ମୋର ପୁଅ । ମୋ ଆଖିରେ ଦୁହେଁ ସମାନ, ଦୁହେଁ ଦୁଇଟି ରତ୍ନ । ତୁ ପଛ କଥା ଭୁଲିଯା ।"

ସେଇ ଦିନଠୁ ହରିବାବୁଙ୍କ ମନ ବଦଳିଗଲା । ସେ ଶରତକୁ ସବୁ ପ୍ରକାର ସାହାଯ୍ୟ କଲେ—ଶରତ ଓ ମନୋଜ ଏକା କଲେଜରେ ଭଲଭାବେ ପଢ଼ାପଢ଼ି କଲେ । ଦୁହିଁଜଣଙ୍କୁ ହରିବାବୁ ଏକାଭଳି ଭଲପାଇଲେ ।



# କାଲୁ-ସୁନା

ଶୁଭେନ୍ଦ୍ର ମୋହନ ଶ୍ରୀଚନ୍ଦନ ସିଂହ



ଶୀତୁଆ ସକାଳଟିଏ । ନୂଆ ଲାଲ ସୂର୍ଯ୍ୟ ଛୁଆମାନେ ଚଟାଣରେ ଗୁରୁଣ୍ଡିଲା ପରି ଆକାଶ ଉପରକୁ ଧୀରେ ଧୀରେ ହାମୁଡ଼େଇ ଉଠୁଥାଏ । ଆଉ ନଡ଼ିଆ, ଦେବଦାରୁ, ନିମଗଛ ଫାଙ୍କରେ କଅଁଳ ସୁନା କିରଣର ସୁନେଲି ଜରି ଚାରିଆଡ଼େ ଲେସି ଦେଉଥାଏ ।

ଏତିକିବେଳେ ଆମ ପରିବାରର ସଭିଏଁ ଘର ସାମ୍ନାରେ ଥାଉଁ । ଘରର ଏ ପାଖଟା ପୂର୍ବଦିଗକୁ । ତେଣୁ ଖରା ଖାଇବାର ଲୋଭ ହେଲେ, ଏଠିକି ଆସିବାକୁ ହୁଏ ।

ହଠାତ୍ ଦେଖାଗଲା ଗୋଟିଏ ଟେଣ୍ଟିଆ ଚାରିଗୋଡ଼ିଆ ଜୀବ ଆମ ଆଡ଼କୁ ଆସୁଛି । ଥାକୁଲୁ ଥାକୁଲୁ । କଣ କଳା ଲୋମ । ମୁହଁରେ ଧଳା ଛିଟ । ଖୁବ୍ ନଉଟେଲ ଭାବ । ସତେ ଯେମିତି ଏ ଘରଟା ତାର ଜଣାଶୁଣା ।

ଆମ ପାଖରେ ପହଂଚିବା ଆଗରୁ ଆମ ବୁଲ୍ଲୁ ଦଉଡ଼ିଗଲା । ଜୀବଟି ତାକୁ ଦେଖି ମାଟି ଉପରେ ଶୋଇଗଲା । ସେ ଖପ୍‌କରି ଉଠେଇନେଲା ତାକୁ । ସଙ୍ଗେ ସଙ୍ଗେ ଶିଲ୍ଲୁ, ଲିଲ୍ଲୀ, ଉଲ୍ଲୀ, ଜଲ୍ଲୀ ଘେରିଗଲେ । ସଭିଏଁ ତାକୁ ଟଣାଓଟରା କରିବାକୁ ଲାଗିଲେ । ନଚେଇବାକୁ ବସିଲେ ।

ସେ ଥିଲା ଗୋଟିଏ କୁକୁର ଛୁଆ । ଲହକା ଜଭ କାଢ଼ିଥାଏ । ଜୁଳୁଜୁଳୁ ଆଖି । ମଝିରେ ମଝିରେ କୁଁ କୁଁ କରୁଥାଏ । ବୋଧହୁଏ ଏତେଗୁଡ଼ିଏ ଛୁଆଙ୍କ ସେନେହ ତା' ଛୁଆ ବୁକୁରେ ନୂଆ ପରିଆଶ ଆଣିଦେଲା । ପିଲାଏ ତାକୁ କୋଳଉଥାଆନ୍ତି । କାଖଉଥାଆନ୍ତି । ଏମାନଙ୍କ ହାତର ଉଷୁମ ଭିତରେ ଛୁଆଟି ବଂଚିବାର କିଛି ଆଶାଟାଏ ପାଇଗଲା ପରି ! ତା ଆଖିରେ ସେଇ ଭାବ ।

କୁକୁରଛୁଆଟିକୁ ନେଇ ଏମିତି ଖେଳ ଚାଲିଥିଲାବେଳେ ପିଲାଙ୍କ ମାଆ ପାଟିକରି ଉଠିଲେ : ଫିଙ୍ଗ ଫିଙ୍ଗ ତାକୁ । କୁକୁର ମାଙ୍କଡ଼ ଆଣିବ । ଘର ମାରା କରିବ ।

ମାଆ ଛେଇ ଛେଇ ଦୂର୍ ଦୂର୍ କଲେ । ପିଲାଏ କୁକୁରଛୁଆକୁ ଜାବୁଡ଼ି ଧରିଲେ । ମାଆ ଓ ଛୁଆଙ୍କ ଏ ହଁ ନାଇଁ ଭିତରେ ମତେଇ ମଧ୍ୟସ୍ଥତା କରିବାକୁ ପଡ଼ିଲା···ଏଇଲାଗେ ପିଲାଏ ଖେଳନ୍ତୁ । ପରେ ଛାଡ଼ିଦେବେ ।

ପିଲାଏ କନ୍ତୁ ପରେ ଛାଡ଼ିଲେନ ।

ପିଲାଙ୍କ ଖୁସି ପାଇଁ ସେ କୁକୁରଛୁଆଟି ଆମ ଘରେ ରହିଲା । ଏମିତିଭାବେ ସେ ହେଲା ଏ ଘରର ଆଉ ଗୋଟିଏ ପ୍ରାଣୀ ।

ଏ ନୂଆ ଅତିଥିର ନାଁ ହେଲା କାଲୁ । ବହୁତ ନାଁ ଆସିଲା ସେ ବୁଲ୍ଲୁର ନାଁ ଦେବାଟା ରହିଲା । ଏ ବୁଲ୍ଲୁ ଆମର ଅନ୍ୟ ପିଲାଙ୍କଠୁଁ ଟିକେ ଅଲଗା । ପଶୁ ପକ୍ଷୀ ତାର ସବୁ । ଶୁଆ, ସାରୀ ପାଳିବାକୁ ଜିଦ୍ । କୁକୁର କୁଟୁରା ରଖିବାକୁ ଜଗର । ମାତ୍ର ଶୀତଦିନରେ ବି ତିନିଥର ଗାଧୋଉଥିବା ଓ ଘରକୁ ସତରଥର ଝାଡ଼ୁ କରୁଥିବା ବୁଲ୍ଲୁର ମାଆ ଏଗୁଡ଼ିକୁ ଆଦୌ ସହିପାରନ୍ତି ନ । ଏଇ କାରଣରୁ ବୁଲ୍ଲୁ ସହିତ ତାଙ୍କର ଝଗଡ଼ା ।

ଯାହାହେଉ, କୁକୁରଛୁଆଟିକୁ ବୁଲୁ ପହିଲେ ଚୋରି ନେଇଥିଲା । ତେଣୁ ସେ ଦାବୀ କଲା ସେଇଟା ତାର । ଆଉ ସେ ଯଦି କହିବ 'କାଲୁ' —ସମସ୍ତେ ସେଇ ନାଁ କୁ ମାନିବାକୁ ବାଧ୍ୟ । ସେଇଥି ହେଲା—ତା ନାଁ ହେଲା କାଲୁ । ଆଖପାଖର ପିଲାଏ ଗୀତ ଯୋଡ଼ିଦେଲେ ।

ପିଲାର ନାଁ ବୁଲୁ
ସିଏ ପାଳିଛି କୁକୁରଛୁଆ
ନାଁ ଦେଇଛି କାଲୁ
ସତେ ଯେମିତି ଭାଲୁ ।

ତେଣୁ କେହି କେହି କାଲୁକୁ ଭାଲୁ ବି ଡାକିଲେ । ଏଣେ କାଲୁ ଓ ଭାଲୁ ଦୁଇଟା ନାଁ ନେଇ ସେ ଆମ ପରିବାରରେ ବଢ଼ିଲା । ଘଟଣାକୁ ସୁହାଇଲା । ହଠାତ୍ ବୁଲୁର ମା ଅନୁପସ୍ଥିତ ରହିଲେ । ତାଙ୍କ ବାପଘରୁ ଡାକରା ଆସିଲା । ସିଏ ସେଠାକୁ ଚାଲିଗଲେ ପ୍ରାୟ ଚାରିମାସ ପାଇଁ ।

ଖବରଟା ଶୁଣି ପିଲାଏ ପହିଲେ ଖୁବ୍ ଖୁସି ହେଲେ । କାଲୁକୁ ଘରେ ପାଳିବାରେ କିଛି ବାଧା ନାଇଁ । ମାଆ ପାଟି କରୁଥିଲେ । ସିଏ ତ ରହିବେ ନି । ତା' ସଙ୍ଗେ ସେମାନେ ଟିକେ ଦବିଗଲେ ବି । ମା ଗଲେ ସେମାନଙ୍କ କଥା ବୁଝିବ କିଏ ! ଏ କଥାର ସମାଧାନ କଲା କାଲୁ । ବୁଲୁ କହିଲା, "ବାବା, କାଲୁର ତ ମା ନାଇଁ । ସିଏ ତ ପୁଣି ଚଳୁଛି ।"

"ଧେତ୍" ଶିଲୁ କହିଲା, "କାଲୁଟା କଣ ମଣିଷ ପିଲା ? ସେଇଟା କଣ ପାଠ ପଢ଼ୁଛି ?"

ଅନ୍ୟ ପିଲାଏ କାଲୁ, କାଲୁର ମା ଓ ନିଜ କଥା ନେଇ ବେଶ୍ କଥାର ଗୁଡ଼ି ଉଡ଼ାଇଦେଲେ ଦୂରରୁ ଦୂରକୁ । ସେସବୁ ମୁଁ ଶୁଣୁଥାଏ ଶୁଆଟିଏ ପରି । ଭାବୁଥାଏ—ଏମିତି ତ ପିଲାଏ ବଡ଼ ହେବେ । ମଣିଷଇ କେବଳ ଚିନ୍ତାକରେ, ଭାବେ ଓ ତା ଜୀବନକୁ ଗଢ଼ିନିଏ ।

କାଲୁ ଆସିବାଦିନରୁ ପିଲାଙ୍କ କାମ ବହୁତ ବଢ଼ିଗଲା । କାଲୁ ଶୋଇବ, କାଲୁ ଖାଇବ । ବେଶି କପଡ଼ା ନ ଦେଲେ କାଲୁକୁ କାଟିବ । ଏମିତି ଅନେକ କଥା ଓ କାମରେ ପିଲାଏ ବାନ୍ଧି ହୋଇଗଲେ । କାଲୁ ଓ ପିଲାଙ୍କ ଭିତରେ ବଢ଼ି ଉଠିଲା ଗୋଟାଏ ଟାଣୁଆ ଡୋରି ।

ଦେଖୁଁ ଦେଖୁଁ କାଲୁଟା ସତରେ ଭାଲୁପରି ବଡ଼ ହୋଇ ଉଠୁଥାଏ । ନିତ ମାଉଁସ ସିଝା ଖାଇ ଭାରି ସୁନ୍ଦର ଗୋଲଗାଲ ହୋଇଥାଏ । ବାପଘରୁ ପଇଁଦିନ ବୁଲୁ ମା' ଫେରିଲେ, କାଲୁ ଭାଉ ଭାଉ କଲା । ଲମ୍ବା ଲାଞ୍ଜ ଗୁଟି କାନ ଠିଆ କଲା । କିଏ ସେ ଅପରିଚିତ ଆସୁଛି ।

ବୁଲୁ କହିଲା, "କାଲୁ, ନାଇଁ···ନାଇଁ ! ମା···ମା— !"

କାଲୁ ଲାଞ୍ଜ ହଲେଇଲା । ପଛପାଖ ନୁଆଁଇଦେଲା, ଆଖି ଚଳକୁ କଲା । ସତେ ଯେମିତି ଗୋଟାଏ କିଛି ଭୁଲ କରି ଦେଇଛି । ଆଉ ସେଇ ସମୟରେ ବୁଲୁ ଆଦେଶ ଦେଲା, "କାଲୁ, ସାଲ୍ୟୁଟ୍ !"

କାଲୁ ପଛଗୋଡ଼ ଦି'ଟା ଲମ୍ବେଇ ପଛ ମାଡ଼ି ବସିପଡ଼ିଲା । ଆଗ ବାଁ ଗୋଡ଼କୁ ମାଟିରେ ଭରା ଦେଇ ଡାହାଣ ଗୋଡ଼ ଟେକିଲା । ପିଲାଏ ହସି ଉଠିଲେ । ସେମାନଙ୍କ ମା' ପାଟି କଲେ "ରଖରେ କୁକୁର ସୁଆଗ ! ଆସିଗଲାଣି । ବେଗି ତାକୁ ବିଦାୟ କର ।"

ପିଲାଏ ମା'ଙ୍କୁ ଭଲଭାବେ ଜାଣନ୍ତି । କଥାରେ କଥାରେ ନଆଁବାଣ । ଯାହା ବୁଝିଥିବେ ସେୟା ! ତା'ହେଲେ କାଲୁ କ'ଣ ରହିବ ନ !

ମାଆ ନ ଥିଲେ ଝମେଲା ନ ଥିଲା । ପିଲାଏ ବେଶି ଭାଗ ଘରେ ରହୁଥିଲେ । ଆଗରୁ ବାହାରେ ବହୁତ ବୁଲାବୁଲି ହେଉଥିଲା । ଏବେ ସେ ସବୁ ବନ୍ଦ । କାଲୁ ସେମାନଙ୍କୁ ଟାଣିଆଣୁଛି । ଏତକ କହି କାଲୁର ସପକ୍ଷରେ ମୁଁ କିଛିଟା ଯୁକ୍ତି କଲି । ସାଲିସ୍ ହେଲା । କାଲୁ କେବଳ ଦାଣ୍ଡ ଘରେ ରହିବ, ଘର ଭିତର ଆଡ଼କୁ ଆଦୌ ଯାଇପାରିବନି ।

ସେଇଦିନ ସଞ୍ଜରେ······

କାଲୁ ଥାଏ ଦାଣ୍ଡଘରେ । ଆମେ ସବୁ ଭିତରେ ।

ହଠାତ୍ କାଲୁ ଗୁର୍‌ଗୁରେଇଲା । ଗୁର୍‌ଗୁରଟା ବଡ଼ ପାଟିରେ ପରିଣତ ହେଲା । ଆମେ ଭାବିଲୁ କିଏ ଆସିଲା । କାଲୁର ସେଇ ଅଭ୍ୟାସ । ଅଜଣା ଲୋକଙ୍କୁ ଦେଖିଲେ ଗରଜେ । ସାହି ପଡ଼ଶା ସମସ୍ତେ କାଲୁକୁ ଡରନ୍ତି । ଫାଟକ ପାଖରେ ଠିଆ ହେଲେ ତ, କାଲୁ ପାଟି କରେ । ବୁଲୁ

ଗଲା ଦେଖିବାକୁ । କେହି ନାହିଁ । କାଲୁ ଗୋଟାଏ ବାଗକୁ ମୁହଁ କରିଛି । ଚଟାଣ ଖଂପୁଡ଼ୁଛି । ଚେନ୍‌ଟାକୁ ଟାଣି ବାରମ୍ବାର ପଛ ଗୋଡ଼ରେ ଠିଆ ହେଉଛି ।

ବୁଲୁ କିଛି ଜାଣି ପାରିଲାନି । ଫେରି ଆସିଲା । ମୋଟେ କହିଲା ।

ପୁଣି କାଲୁ ଭୁକିଲା । ମୁଁ ଗଲି । କାଲୁର ସେଇ ଅବସ୍ଥା ।

ରୁଟି ଦେଲି । ଛୁଇଁଲାନି । ଗୋଟାଏ ବାଗକୁ ଅନାଇଁଥାଏ । ସେ ଆଖିଗୁଡ଼ାକ ଜଳି ଉଠୁଛି । କାନ ଠିଆ । ସେ ଶିକାର ଦେଖିଛି କି !

ସେଇ ଆଖିକି ଠଉରି କରି ଅନାଇଲି । ଚମକି ଉଠିଲି । କାନ୍ଥରେ ଗୋଟିଏ ସରୁ ଗାତ । ସେଇଠି ଗୋଟାଏ ଛୋଟ ଗୋଜଆ ମୁହଁ ଧୀରେ ଲୁଚି ଯାଉଥିଲା । ଦେଖିଲି ସରୁ ପିଞ୍ଛ ପରି ଦୁଇଟା ଜିଭ ।

ଓଃ ! କାଲୁ ଏଇଥିପାଇଁ ତେବେ ଭୁକୁଥିଲା !

କଅଣ ସେଇଟା ? ସେଇ ସରୁ ମୁହାଁ ଗାତରେ ରହିବା ଜୀବଟା ?

ଏଥର ଚାଲାକି କଲି । ଫେରିଗଲି ପଛକୁ । ଛପି ରହିଲି । ଆଖି ଥାଏ ସେଇ ଗାତ ଉପରେ ।

ଖୁବ୍ ଅଳ୍ପ ସମୟ ପରେ··· । କାଲୁ ପୁଣି ଡାକ ଛାଡ଼ିଲା । ଥିର୍ ଥିର୍ କରି ଯାହା ଦେଖିଲି, ସେଥିରେ ବ୍ୟସ୍ତ ହୋଇ ଉଠିଲି ।

ଗାତ ଭିତରୁ ମୁଣ୍ଡ ଟେକିଛି ସାପଟାଏ !

ସେଇଟା ଦାଣ୍ଡଘର । ସେଇ ବାଟେ ସବୁ ଯିବା ଆସିବା । ଘଣ୍ଟାବକାଳ । ଘର ଭିତରେ ଗୋଟାଏ ସାପ ! ପିଲାମାନଙ୍କୁ ବୁଝାଇଦେଲି । ସେମାନେ ସାପ ଯେଉଁଠି ଅଛି ଦେଖିନେଲେ । ସେମାନଙ୍କ ମା' ହାଲୋଳ ଉଠିଲେ, "ଆଲୋ ଆଲୋ, ଏ ସାପ ଘରେ ମୋ ପିଲାଏ ଚଳିବେ କେମିତି !"

କାମରେ ଲାଗିଗଲି । ତିନିଟି ଗୁଣ୍ଡିକୁ ପାଣିରେ ଗୋଳାଇଲି । ଭର୍ତ୍ତିକଲି ସେଇ ଗାତରେ ।

କାଲୁ ଖୋଲି ଥାଏ । ମୁଁ ଜଗିଥାଏ । ହାତରେ ଲୁହାର ଲମ୍ବା ରଡ୍ । କିଛି ସମୟ ପରେ ସାପଟା ହଡ଼ବଡ଼େଇ ବାହାରି ଆସିଲି ।

କାଲୁ ଗର୍ଜିଉଠି ବାଟ ଓଗାଳିଲା ।

ପିଲାଏ ବେଶ୍ ଦୂରରେ ଥାଆନ୍ତି । ସାପର ବେକ ପାଖରେ ଲୁହା ରଡ୍ ବାଜିଲା । ସାପଟା ଘୁଞ୍ଚି ପାରିଲାନି । ରଡ୍‌ରେ ଗୁଡ଼େଇ ହୋଇଗଲା । ଜୋର୍ କରି ସିମେଣ୍ଟ ଚଟାଣରେ ଗୃପି ଧରିଥାଏ ରଡ୍‌କୁ । କାଲୁ ତା ପଞ୍ଝାରେ ସାପଟାକୁ ବାରଂବାର ଆଘାତ କରୁଥାଏ । ଏମିତି ସାପକୁ ମରାଗଲା ।

ଏହାପରେ ପିଲାଙ୍କ ଆନଂଦ ଦେଖିବ କିଏ ! ବାଃରେ କାଲୁ ! ସାପ ଦେଖିଲୁ ! ପାଟି ତୁ କଲୁ ! ଆମର ଜୀବନ ତୁଇ ରଖିଲୁ ! କାଲୁ ଲାଞ୍ଜ ହଲେଇ ପିଲାମାନଙ୍କ ଆନନ୍ଦ ଓ ଉତ୍ତେଜନାକୁ ପିଇ ଯାଉଥାଏ ।

ଦେଖିଲି ବୁଲୁର ମା' ବେଲାଏ ଭାତରେ ଏତେଗୁଡ଼ାଏ ମାଂସ ନେଇ ହାଜର ।

"ନେ···ନେ···କାଲୁ···ଖା !" ଉପରେ ଶୋତା ପଡ଼ିଯାଇଥିବା ତାଙ୍କ ମୁହଁରେ ଗୋଟାଏ ଆଲୁଅଧାର । ତାହା ଆଶ୍ୱସ୍ତିର । କହିଉଠିଲେ, 'ବୁଲୁ ଆମର ସୁନା ପିଲା । କାଲୁ ତାହାର ସୁନାଟାଏ !'

ପଚାରିଲି, "କାଲୁ ରହିବ ନା ଯିବ ?"

ସେ କହିଲେ, "ଯିବ !"

ସବୁ ପିଲାଏ ପାଟି କରି ଉଠିଲେ, "ନା···ନା···ନା···"

ସେ କହିଲେ, "ଆରେ କାଲୁ ଯିବନି । ଯିବ କାଲୁର ନାଁ । ତା ନାଁ ହେବ ସୁନା । ପଶୁ ହେଲେ ବି ସେ ସୁନାଟାଏ ।"

ପିଲାଏ ସେମାନଙ୍କ ମା'ଙ୍କୁ ଘେରିଗଲେ ।

"ଆମର ମା ସୁନା ମା
କାଲୁରେ ସୁନା ହେଇ ଯା ! !"

ବୁଲୁ କହିଲା "ସୁନା, ସାଲ୍ୟୁଟ୍ ।"

କାଲୁ ଗୁର୍ ଗୁର୍ ହେଲା ସିନା, ସାଲ୍ୟୁଟ୍ କଲାନି ।

ଶିଲୁ କହିଲା, "କାଲୁ ସୁନା, ସାଲ୍ୟୁଟ୍ । ସାଲ୍ୟୁଟ୍ ।

ଖୁସିରେ ସ୍ୱାଭାବିକ ଭାବରେ ସେ ସାଲ୍ୟୁଟ୍ ଦେଲା । ସମସ୍ତେ ଆନନ୍ଦରେ ପାଟି କରି ଉଠିଲେ ।






ଦିନେ ବଡ଼ ସକାଳେ ଆମେ ଆଖି ମଳ ମଳ ଦେଖୁଚୁ ଗୋଟାଏ ବୁଲା କାଳୀ କୁଣ୍ଡ ଲଙ୍ଗୁଡ଼ ହଲେଇ ହଲେଇ ଆମ କବାଟ ପାଖରେ ବସିଛି । ଆମେ ଯେମିତି କବାଟ ଫିଟାଇଛୁ, କୁକୁରଟା ଦି' ଗୋଡ଼ ଟେକି ଆମ ଆଡ଼କୁ ଚଢ଼ିଆସିଲା । ଆମେ ଶରଶର ପାଟିଟାଏ ଲେଖାଏଁ କରି ଘର ଭିତରକୁ ପଳେଇଲୁ । ହଠାତ୍ ମୋର ମନେହେଲା, ପିଲାଦିନେ ଆମର ଯୋଉ କାଳିଆ କୁକୁରଟା ଦିନେ ରାତିରେ ଅନ୍ତର୍ଦ୍ଧାନ ହୋଇ ଯାଇଥିଲା, ଆଉ ଆମ କୋଠିଆ କହୁଥିଲା ଯେ ତାକୁ ରାତି ଅଧରେ ଗୋଟିଏ ବିଲୁଆ ଖାଇଗଲା ବୋଲି, ସେଇ ବୋଧହୁଏ ବିଲୁଆ ପେଟରୁ ବାହାରି ପଳେଇ ଆସିଛି । ଏ କଥା ମନେ ପଡ଼ିବା ମାତ୍ରେ ଆମେ ଆମର ସବୁତକ ସ୍ନେହ ତା ଉପରେ ଅଜାଡ଼ି ଦେଲୁ । କିନ୍ତୁ ସେ ବେଶିଦିନ ନୁହେଁ । ତିନିଦିନ ପରେ ସେ କୁକୁର କୁଆଡ଼େ ପଳେଇଲା । ପଛରେ ଆମେ ଶୁଣିଲୁ ଯେ ତାକୁ

ମ୍ୟୁନିସିପାଲିଟିର କୁକୁରଧରାଗାଡ଼ି ଟୋକା ନେଇଗଲେ । ସେ ବୋଧହୁଏ ମାରି-ସାରିବଣି । ସେ କଥା ଶୁଣି ଆମେ ଦି' ଭାଇ ଦି' ଭଉଣୀ ଥକ୍‌କାମରା ହୋଇ ଆମ ବଗିଚାର ଲେଙ୍ଗଡ଼ା ଆମ୍ବଗଛ ତଳେ ବସିପଡ଼ିଲୁ । ମୋ ତଳ ଭଉଣୀ ପଚାରିଲା, "କୁକୁରଧରାଳି କାହିଁକି ଆମ କୁକୁରକୁ ନେଲା ?" ମୋ ବଡ଼ ଭଉଣୀ ଭାବି ଭାବି କହିଲା, "ପୃଥିବୀରେ ବର୍ତ୍ତମାନ ଏତେ କୁକୁର ହେଲେଣି ଯେ ତାଙ୍କ ଭିତରୁ କେତେଟାଙ୍କୁ ମାରି ଦିଆ ନଗଲେ ଏ ପୃଥିବୀସାରା ଖାଲି କୁକୁର ହୋଇଯିବେ, ମଣିଷ ଆଉ ନଥିବେ ।"

ସଙ୍ଗେ ସଙ୍ଗେ ମୋ ଉପରକୁ ଚାହିଁ କହିଲା, "ଖାଲି କଅଣ ସେତିକି ? ଏମିତି ଦିନ ଆସିବ, ଯେତେବେଳେ ଆମ ପୃଥିବୀଯାକ ଖାଲି ହୋଇଯିବ ବହି । ବର୍ଷକରେ ଯେତେ କୁକୁରଛୁଆ ହେଉଛନ୍ତି ତା ଅପେକ୍ଷା ବେଶି ବହି ପ୍ରତିବର୍ଷ ଛାପା ହେଉଛି ବୋଲି ସାର୍ କହୁଥିଲେ ।"

କଥାଟା ପ୍ରକୃତରେ ଏତେ ସତ ଲାଗିଲା ଯେ ମୁଁ ଓ ମୋ ତଳ ଭଉଣୀ କୁକୁର କଥା ଭୁଲି ବହି କଥାରେ ଲାଗିଗଲୁ ।

ସେଦିନ ରାତିରେ ମୁଁ ଗୋଟାଏ ସ୍ୱପ୍ନ ଦେଖିଲି । ପାହାଡ଼ ଉଚ୍ଚ ବହିସବୁ ଆମ ଘରପାଖେ ଜମା ହୋଇଛି । ପବନରେ ସେ ପାହାଡ଼ଗୁଡ଼ାକ ଦୋହଲି ଉଠୁଛନ୍ତି । କାଳିକାଳିଆ ହୋଇ ଆମେ ଯୁଆଡ଼େ ପଳେଇବାକୁ ବସିଲୁ ସିଆଡ଼େ ଖାଲି ବହି ଆଉ ବହି । ମୁଁ ବାଳିବାଳେଇ ଉଠିଲି ।

ତା ପରଦିନ ସକାଳୁ ଉଠି ମୁଁ ସେଇକଥା ବିଚାର କଲି । ସତ କଥା, ଦିନକୁ ଦିନ କେତେ କୋଟି ବହି, ନୂଆ ପତ୍ରିକା, ଖବରକାଗଜ-ସବୁ ପୃଥିବୀରେ ଜନ୍ମ ହେଉନାହାନ୍ତି ? ଏଗୁଡ଼ାକ ତ କୁକୁର ଗଛଲଟା ନୁହନ୍ତି ଯେ ଆମେ ତାଙ୍କୁ ମନଇଚ୍ଛା ହାଣିଦବା, ଜାଳିଦବା, ପୋଡ଼ିଦବା ! ବହିଗୁଡ଼ାକ ତ ଆମର । ତାଙ୍କୁ ମାରିବ କିଏ ?

ମତେ ଗୋଟିଏ ବୁଦ୍ଧି ଜୁଟିଲା । ମୁଁ ମୋ ଭାଇ ଭଉଣୀଙ୍କୁ ଡାକି କହିଲି, "ଦେଖ, ଗୋଟିଏ କାମ କଲେ ଆମେ ବହି ଡାଉରୁ କିଛିଦିନ ପାଇଁ ବଞ୍ଚିଯାଇ ପାରିବା । ଆଗେ ଯେତେବେଳେ ବେଙ୍ଗଗୁଡ଼ାକ ମଙ୍କଡ଼ି ପରି ହୋଇ-ଥିଲେ, ଆଉ ମଣିଷମାନେ କୋଡ଼ିଏ ଏବେ ଗୋଇଣୀ ଫୁଟ ଡେଙ୍ଗା ହୋଇଥିଲେ, ସେତେବେଳେ ଭଗବାନ ଦେଖିଲେ ଯେ ଏ ଜନ୍ତୁଗୁଡ଼ାକ ଯଦି ଏଡ଼େ ବଡ଼

ବଢ଼ି ହୁଅନ୍ତି, ତା'ହେଲେ ଭବିଷ୍ୟତରେ ତାଙ୍କ ବଂଶଧରମାନଙ୍କ ପାଇଁ ଜାଗାର ଅଭାବ ପଡ଼ିବ । ତେଣୁ ସେ ଆମକୁ ଦିନକୁ ଦିନ ବାମନ କରି ଦେଉଛନ୍ତି । ପୃଥିବୀରେ ଜାଗା ବଞ୍ଚୁଛି । ସେମିତି ଆମେ ଯଦି ଆମ ମୋଟା ବହିଗୁଡ଼ାକୁ ବାମନ କରେଇ ଦେଇପାରନ୍ତେ, ତା'ହେଲେ ଆମର ବହୁତ ଜାଗା ବଳିପଡ଼ନ୍ତା ।"

ଆଖି ମିଟି ମିଟି କରି ମୋ ସାନ ଭଉଣୀ ପଚାରିଲା—"ଏ କଥା କେମିତି ହବ ? ବହିଗୁଡ଼ାକୁ କେମିତି ବାମନ କରିବା ?"

ମୁଁ କହିଲି, "ଆଚ୍ଛା, ଏଡ଼େ ବଡ଼ ପର୍ବତ, ପାହାଡ଼, ନଈ, ସମୁଦ୍ର, ଆକାଶ ଏମାନଙ୍କୁ ବାମନ କରି ତୁମେ କେମିତି କାନ୍ଥ ଦିହରେ ଟାଙ୍ଗିଛ ? ସେମିତି ବହିଗୁଡ଼ାକର ଛୋଟ ଛୋଟ ଛବି ଉଠେଇ ତାଙ୍କୁ ସିନେମା ଦେଖିଲା ଭଳି ପଢ଼ିଲେ କେମିତି ହୁଅନ୍ତା ?"

ମୋ ସାନ ଭଉଣୀ କହିଲା, "ଭାଇ, ତା'ହେଲେ ଆମ ଘରେ ଏ ଯୋଉ ପାଞ୍ଚ ଆଲମାରି ବହି ଥାକମରା ହୋଇଛନ୍ତି ସେତକର ଛବି ଉଠେଇ ଗୋଟାଏ ଶେଲ୍ଫରେ ଗୁଡ଼େଇ ରଖିଲେ ତ ହୁଅନ୍ତା ! ପାଞ୍ଚ ଆଲମାରି ଯାକର ବହି ଗୋଟାଏ ଛୋଟ ସୁଟ୍‌କେସ୍ ଭିତରେ ରହିଯାଇ ପାରନ୍ତା ତ ?"

ଯାହାହେଉ, ସେଦିନ ସେ କଥାଟା ଆମକୁ ଏଡ଼େ ସହଜ ଜଣା ପଡ଼ିଲା ନାହିଁ । କିନ୍ତୁ ଆଜ ଯେତେବେଳେ ଆମ ଆଖିରେ ଆମେ ମାଇକ୍ରୋଫିଲ୍ମ ଦେଖୁଛୁ, ସେତେବେଳେ ଆମ ପିଲାଦିନର ସେଇ ପିଲାଳିଆ କଥାଗୁଡ଼ାକ ମନେପଡ଼ୁଛି ।

ଆଜକାଲି ବଡ଼ ବଡ଼ ଲାଇବ୍ରେରିରେ ବହିମାନଙ୍କର ଛବି ନିଆ-ହେଉଛି । ସିନେମା ଷ୍ଟୁଡ଼ିଓରେ ଛବି ଉଠେଇଲା ଭଳି, ସରୁ ସରୁ ଫିତା ଭଳି ଫିଲ୍ମ ଉପରେ ବହିଗୁଡ଼ାକର ପୃଷ୍ଠା ପୃଷ୍ଠା ହୋଇ ଛବି ନିଆହେଉଛି । ଏ ଫିତାଗୁଡ଼ିକର ଚଉଡ଼ା ପ୍ରାୟ ୧୬ ମିଲିମିଟର ବା ପଇଁତିରିଶ ମିଲିମିଟର । ଏହାଠୁଁ ଆଉ ବଡ଼ ଫିଲ୍ମ ବି ବେଳେବେଳେ ବ୍ୟବହାର ହେଉଛି । ଛବି ନିଆ ସରିଲେ, ଯେତେବେଳେ ପଢ଼ିବା ଦରକାର ପଡ଼େ, ଠିକ୍ ସିନେମା ଦେଖିଲା ଭଳି ସେଗୁଡ଼ିକର ଛବି ସବୁ ପରଦା ଉପରେ ଦେଖେଇ ଦିଆଯାଏ । ଆଃ ! କି ମଜା ! ସିନେମାକୁ ସିନେମା ଦେଖାହୁଏ, ପଢ଼ାକୁ ପଢ଼ା ବି ହୁଏ ।

ଏମିତି କରିବାଦ୍ୱାରା ଗୋଟାଏ ବଡ଼ ସୁବିଧା ହେଉଛି ଯେ ଲାଇବ୍ରେରୀମାନଙ୍କରେ ବହୁତ ଜାଗା ବର୍ତ୍ତମାନ ବଞ୍ଚୁଛି । ସେଠି ଆହୁରି ଅଧିକ ବହି ବା ଫିଲ୍ମ ଆସି ରହୁଛି । ଶହେ ଫୁଟ୍ ଲମ୍ବର ଗୋଟିଏ ଷୋହଳ ମିଲିମିଟର୍ ଫିଲ୍ମ ଉପରେ ଷୋହଳ ହଜାର ପୃଷ୍ଠାର ଗୋଟିଏ ଅଭିଧାନର




ଛାପ ନିଆହୋଇପାରେ । ଏହାଦ୍ୱାରା କେତେ ଜାଗା ଆଉ କେତେ ଓଜନ କମେ, ଜାଣ ? ଯୋଉ ଅଭିଧାନଟାକୁ ମୋ ସାନଭାଇ କୁଣ୍ଢେଇ ପକେଇ ଧରିକରି ମଧ୍ୟ ଟେକିପାରେନା, ସେଇ ଅଭିଧାନର 'ସୂକ୍ଷ୍ମଛବି' ବା 'ମାଇକ୍ରୋଫିଲ୍ମ'କୁ ସେ ତା ହାତମୁଠା ଭିତରେ ଲୁଚେଇ ଧରିପାରେ ।

ଏହାଛଡ଼ା ବହିଗୁଡ଼ିକ ଯେତେ ଯେତେ ପୁରୁଣା ହେବ ତା ଉପରେ ସେତିକି ସେତିକି ବିପଦ ମାଡ଼ି ଆସିବ । ପୋକ ଖାଇଯିବାର ଭୟ ଅଛି । କାଗଜସବୁ ପୁରୁଣା ହୋଇଗଲେ ତା ମନକୁ ଛିଣ୍ଡି ପଡ଼ିବ । ତା ଛଡ଼ା ନିଆଁ ପାଣି ଭୟ ତ ସବୁବେଳେ ଲାଗିଛି । କିନ୍ତୁ ଏ ସବୁ ବହି ବା କାଗଜ-

ପତ୍ରର ଚିତ୍ର ନେଇଯାଇ ତାକୁ କାଇଦାରେ ଲୁହା ବାକ୍ସ ଭିତରେ ରଖିଲେ ସେଗୁଡ଼ିକ ନଷ୍ଟ ହେବ ନାହିଁ । ଜାଗା ଯେତେ ଶ୍ରେଷ୍ଠ ହେବ, ଆମେ ସେତିକି ହେପାଜତ୍ କରିପାରିବା ସେଇ ଜାଗାରେ ରହିଥିବା ଜିନିଷଗୁଡ଼ିକର ।

ଦ୍ୱିତୀୟ ବିଶ୍ୱଯୁଦ୍ଧବେଳେ କ'ଣ ହେଲା ? ଇଂଲଣ୍ଡ ଉପରେ ଯେତେବେଳେ ଲଡୁଆ ଜର୍ମାନୀ ଉଡ଼ାଜାହାଜସବୁ ବୋମାବର୍ଷଣ କଲେ, ସେତେବେଳେ ସେଠାକାର ବଡ଼ ବଡ଼ ଲାଇବ୍ରେରୀର ମାଲିକମାନଙ୍କୁ ବୁଦ୍ଧିବାଟ ଦେଖାଗଲା ନାହିଁ । ଏତେ ବହି, ଏତେ ପୁରୁଣା ବହି ସବୁ ନେବେ କେଉଁଠିକି ? ଗୁଡ଼ାଏ ବହିରେ ତ ହାତ ବାଜିଲେ ତା'ର ପୃଷ୍ଠା-ଗୁଡ଼ାକ ଝଡ଼ି ପଡ଼ୁଥାଏ । ସେଇ ସମୟରେ ଅନେକ ମୂଲ୍ୟବାନ ବହି ଧ୍ୱଂସ ହୋଇଗଲା । ସେଗୁଡ଼ିକର ଆଉ ଦ୍ୱିତୀୟ ଖଣ୍ଡ ବି ନ ଥିଲା ।

ବହି ହେଉଛି ମଣିଷର ପ୍ରକୃତ ଜୀବନ । ଗୋଟାଏ ଘର କି ପୋଲ ଭାଙ୍ଗିଗଲେ ପଇସା ଖର୍ଚ୍ଚ କରି ଆଉ ଗୋଟାଏ ତା ଜାଗାରେ ଠିଆ କରାଇ ଦେଇ ହେବ—କିନ୍ତୁ ଖଣ୍ଡିଏ ପୁରୁଣା ଦୁଷ୍ପ୍ରାପ୍ୟ ବହି ଯଦି ନଷ୍ଟ ହୋଇଗଲା, ସେ ବହି ତ ଆଉ ମିଳିବ ନାହିଁ । ହୁଏତ ସେଇ ବହି ଖଣ୍ଡିକ ପାଇଁ ଆମ ସଭ୍ୟତା ଆଉ କିଛିଦିନ ଆଗେଇ ଯାଇପାରିବ ନାହିଁ । ଆମେ ଯଦି ଆଜି ଭାବୁଛେ ଯେ ଆଉ ଦଶବର୍ଷ ଭିତରେ ଆମେ ଚନ୍ଦ୍ରକୁ ଯିବା ବୋଲି, ଖଣ୍ଡେ ବହି ଅଭାବରେ କଥା ଏମିତି ଗୋଳମାଳିଆ ହୋଇଯିବ ଯେ ଦଶବର୍ଷ କାଅଣ ଚନ୍ଦ୍ରକୁ ଯିବାକୁ ମଣିଷକୁ ଆଉ ଶହେ ବର୍ଷ ବି ଲାଗିଯାଇପାରେ ! ତେଣୁ, ବହିକୁ ଅମର, ଅଜର କରି ଗଢ଼ିବା ହେଲା ଆମର ଲକ୍ଷ୍ୟ । ସେଥିସହିତ ଏହି ବହିଗୁଡ଼ିକ ଯେମିତି ଆମଠାରୁ ବେଶି ଥାନ ମାଡ଼ି ନ ବସନ୍ତି, ସେଥିପ୍ରତି ମଧ୍ୟ ଆମର ଦୃଷ୍ଟି ରଖିବା ଉଚିତ ।

ଏଥିପାଇଁ ବୈଜ୍ଞାନିକମାନେ ଆଜି ଲାଗି ପଡ଼ିଛନ୍ତି । ବହିର ସୂକ୍ଷ୍ମ ଚିତ୍ର ଗ୍ରହଣ କରିବା ପାଇଁ ନୂଆ ନୂଆ ଉପାୟ ସବୁ ଚିନ୍ତା କରାଯାଉଛି ।।






ଗାଆଁଟିର ନାଆଁ ନମପୁର । ସେଇ ଗାଆଁରେ ଲୋକନାଥର ଘର । କ ବୁଢ଼ା କ ଟୁଆ ସଭିଏଁ ତାକୁ ଲୋକା ବୋଲି ଡାକନ୍ତି । ତାର ବାପା ହାଣ୍ଡି ମାଠିଆ ଗଢ଼ି ସଂସାର ଚଳାନ୍ତି । ଗାଆଁରେ କେତେ ବା ରୋଜଗାର ହେବ ? ମୁଣ୍ଡରେ ହାଣ୍ଡି ବୋଝ ଧରି ଆଖପାଖ ଗାଆଁକୁ ବିକିବାକୁ ଯାଆନ୍ତି । ସେଇଥିରୁ ଯାହା ଦି'ପଇସା ମିଳେ ସେଥିରେ କୌଣସିମତେ ଗୁଜୁରାଣ ମେଣ୍ଟିଯାଏ । ହାଣ୍ଡି ମାଠିଆ ନେଇ କେହି କେହି ଗୃହଜନ ମାଣେ, ଆଳୁ ପୁଞ୍ଜେ କି ସାରୁ ଦି'ଟା ଦେଇ ଦିଅନ୍ତି । ଲୋକନାଥର ବାପା ସେଥିକି କାଟାଳ କରନ୍ତି ନାହିଁ । ଖୁସି ମନରେ ଲୁଗା କାନରେ ବାନ୍ଧି ନେଇ ଆସନ୍ତି ।

ଲୋକନାଥ ତା' ବାପାକୁ କାମରେ ସାହାଯ୍ୟ କରେ । ଏଣିକି ସେ ହାଣ୍ଡି ମାଠିଆ ଗଢ଼ି ବସିଲେ, ବାପା ଚାଲିଯାଏ ଦୂର ଗାଆଁକୁ ବିକିବାକୁ,

ଢ଼'ଜଣଙ୍କ ରୋଜଗାରରେ କିଛି ଅଧିକ ପଇସା ମିଳେ ସତ, ହେଲେ ସେ କିଛି ନୁହେଁ । ହାଣ୍ଡି ମାଠିଆ କେତେ ବା ଭାଙ୍ଗୁଛି ଯେ ଲୋକେ ସବୁଦିନ କିଣିବେ ? ତଥାପି ସେମାନେ ଶାନ୍ତିରେ ଥାଆନ୍ତି । ମିଳିଲେ ଖାଆନ୍ତି ନ ମିଳିଲେ ନାହିଁ । ଖୁଦ ଦି'ଟା କି ଗୁଡ଼ାଳଭଜା ଦି'ଟା ପାଟିରେ ପକେଇ ଭୋକ ମାରନ୍ତି ।

ଗାଆଁ ଦାଣ୍ଡରେ ପିଲାଏ ଖଡ଼ି ସିଲଟ ଧରି ପଢ଼ିବାକୁ ଯାଆନ୍ତି । ଲୋକା ଦେଖେ । ଅନେଇ ରହେ ସେଇ ଆଡ଼କୁ ଘଡ଼ିଏ ଖଣ୍ଡେ । ତାର ହାତ ଆପେ ଆପେ ରହିଯାଏ । ହାଣ୍ଡି ମାଠିଆ ଗଢ଼ା ସେଇଠି ରହେ । ସେ ଭାବି ଚାଲେ କେତେ କ'ଣ । ସେ କ'ଣ ପଢ଼ିପାରିବ ନାହିଁ ? ସେ କ'ଣ ଖଡ଼ି ସିଲଟ ଧରି ସାଥି ପିଲାଙ୍କ ମେଳରେ ଯାଇପାରିବ ନାହିଁ ? ହେଲେ ଏଥିକି ପଇସା ଦରକାର । ପଇସା ପାଇବ ବା କୋଉଠୁ ? ଖଡ଼ି ସିଲଟ କିଣିବ କେମିତି ? ଏଣେ ପୁଣି ବାପାଙ୍କୁ କାମରେ ସାହାଯ୍ୟ ନ କଲେ ଘର ଚଳିବ କିପରି ? ଏମିତି କେତେ କ'ଣ ଭାବି ବସେ । ପିଲାଏ ଆଖି ଆଗରୁ ଚାଲିଗଲେ ସେ ଫେରିଆସେ ଭାବନା ରାଇଜରୁ । ମୁହଁ ତଳକୁ ପୋତି ପୁଣି କାମ କରି ଚାଲେ ଆଗ ଭଳି ।

ବାପା ଦେଖିଲେ ପୁଅ ଏବେ କେମିତି ଆନମନା ରହୁଛି । କାମ କରୁଛି ସତ, ହେଲେ ମନରେ ତା'ର ଯେମିତି ସରାଗ ନାହିଁ । ମାଆଛେଉଣ୍ଡ ପିଲାଟି । ଦୁଃଖ କହିବ ବା କାହାକୁ ? ସେ ନିଜେ ତ ଲୋକାର ସବୁ କିଛି । ସେ ତାର ବାପା, ସେ ତାର ମାଆ । କିଅଁ ଲେଇ କରି ବୁଝିଲେ ସେ ଲୋକାର ମନ କଥା ।

ପରଦିନ ନୂଆ ସିଲଟ ଆଉ ଖଡ଼ି ଦେଖି ଲୋକା ମନ କୁଣ୍ଢେ ମୋଟ । ସେ ବିଶ୍ୱାସ କରିପାରିଲାନି । ସତେ କ'ଣ ଏତେ ଦିନକେ ଭଗବାନ ତା ଡାକ ଶୁଣିଲେ । ସତରେ କଣ ସେ ପଢ଼ିବାକୁ ଯିବ ? ଏଣେ କିନ୍ତୁ ଘର ଚଳିବ କେମିତି ? ସେ ତ ଏକାଟିଆ ନାହିଁ । ଅଛନ୍ତି ଆହୁରି ଚାରୋଟି ଭାଇ ଭଉଣୀ । ହେଲେ, ବାପାଙ୍କ କଥାକୁ ଏଡ଼ିଦେଉଛି କେତେବେଳେ ? ଲୋକା ପଢ଼ିବାକୁ ଯାଏ । ଫେରିଲେ ବାପାଙ୍କ କାମରେ ଲାଗିଯାଏ ।

ଏଇମିତି ଦିନ ଗଡ଼ି ଚାଲିଥାଏ । ଲୋକନାଥ ଏବେ ଷଷ୍ଠ ଶ୍ରେଣୀର ଛାତ୍ର । ବେଶ୍ ମନ ଦେଇ ପାଠ ପଢ଼ୁଛି । ଘରେ ବାହାରେ ସବୁଠି ତାର ଆଦର ।

ସତେ ବିଦ୍ୟାଳୟରେ ହୁରି ପଡ଼ିଗଲା । ଯିଏ ଯାହାର କାମରେ ଲାଗିଗଲେ । କିଏ ଦେବଦାରୁ ଡାଳ ଆଣିଲା ତ କିଏ କାଗଜ କାଟି ଫୁଲ ତିଆରି କଲା । କିଏ ବା ଅଠା ଆଣି ନାଲି ନେଳି ପତାକା ଲଗେଇଲା । ଆଉ କିଏ ବା ଫାଟକ ପାଖରେ କଦଳୀ ଗଛ ପୋତିଲା । ଓଳାଓଳି ହୋଇ ଚାରିଆଡ଼ ସଫା ସୁତୁରା ଦିଶିଲା । ଘର ଝଟାଝଟ ହୋଇ ଦିଶିଲା ଆଗଠାରୁ ଆହୁରି ସୁନ୍ଦର ।

ବିଦ୍ୟାଳୟକୁ ବଡ଼ ହାକିମ ଆସିବେ । ଶିକ୍ଷକ ତାଗିଦ୍ କରିଛନ୍ତି । ଚାରିଆଡ଼ ପରିଷ୍କାର ପରିଚ୍ଛନ୍ନ ରହିବ । ପିଲାଏ ସଫା ସୁତୁରା ହୋଇ ଆସିବେ । ମନ ଦେଇ ପାଠ ପଢ଼ିଥିବେ । ହାକିମ ପଚାରିଲେ ସାଂଗେ ସାଂଗେ ଯେମିତି କହିଦେବେ ।

ଶିକ୍ଷକ ବୁଲି ବୁଲି କାମ ଦେଖୁଛନ୍ତି । ପିଲାଙ୍କୁ କାମ ବତେଇ ଦଉଛନ୍ତି । ହାକିମ ଆସିବାର ବେଳ ହୋଇ ଆସିଲା । ପିଲାଏ କାମ ସାରି ଶ୍ରେଣୀରେ ବସିଲେ । ଏପାଏ ଲୋକା ଉପରେ କାହାର ନଜର ପଡ଼ି ନ ଥିଲା । ତାକୁ ଦେଖି ସାଙ୍ଗ ପିଲାଏ ଠୋ ଠୋ ହସି ଉଠିଲେ ।

ଜଣେ କହିଲା—ବାଃ, ଭରି ସୁନ୍ଦର ଜାମାଟାଏ ତ । ଆଉ ଜଣେ କହିଲା—କ'ଣ ସହରରୁ କିଣି ଆଣିଚୁ କିରେ ? ଶ୍ରେଣୀର ସବୁଠାରୁ ଦୁଷ୍ଟ ପିଲା ମନୁ ପାଟି କରି ଉଠିଲା—ହାଣ୍ଡି ମାଠିଆ ବିକା ପଇସାରେ ତା ବୋଉ ବାଛି ବାଛି ସୁନ୍ଦରିଆ ଜାମାଟାଏ କିଣି ଦେଇଛି । ଖାଲି ସେତିକି ନୁହେଁ, ତାକୁ ଛୁଗୁଲେଇ ବାରକଥା କହିଲା ମନୁ ।

ଲୋକାର ଆଖିରେ ଲୁହ ଜକେଇ ଆସିଲା । ସାଙ୍ଗ ପିଲାଙ୍କ ଥଟ୍ଟା ତା ମନରେ ଆଘାତ ଦେବା ସଂଗେ ସଂଗେ ବୋଉ କଥା ତାର ମନେ ପଡ଼ିଲା । ସେ ବଡ଼ ପାଟିରେ କାନ୍ଦି ଉଠିଲା । କୋହ ଉପରେ କୋହ ଆସି ତାର ଗଳା ଯେମିତି ରୁନ୍ଧିଦେଲା ।

ଶିକ୍ଷକ ଦଉଡ଼ି ଆସିଲେ । ପଚାରି ସବୁ ବୁଝିଲେ । ଏମିତି କଥା କହି କାହା ମନରେ କଷ୍ଟ ନ ଦେବା ପାଇଁ ପିଲାଙ୍କୁ ତାଗିଦ୍ କଲେ । ଲୋକାକୁ ପାଖକୁ ଡାକି ଆଉଁସିଦେଲେ । ଶୁଣିଲେ, ଜାମା କିଣିବାକୁ ତାର ପଇସା ନାହିଁ । ମାଆଛେଉଣ୍ଡ ସେ । ଆଜି ହାକିମ ଆସୁଛନ୍ତି ।

ଶିକ୍ଷକଙ୍କ ଚାଗଦା ଭଲ ଜାମାପଟା ପିନ୍ଧି ଆସିବାକୁ । ପିନ୍ଧା ଜାମା ସଫା କରୁ କରୁ ଶରିଗଲା ।

ଦରଜୀ ପାଖରେ ସିଲେଇ କରିବାକୁ ପଇସା ଦରକାର । ସେତକ ମିଳିଲାନି ତାକୁ । ଏଣେ ପୁଣି ବିଦ୍ୟାଳୟ ଆସିବାକୁ ଇଚ୍ଛା । ଝୁଲୁଣ କନା ଖଣ୍ଡେ ଆଣି ନିଜ ହାତରେ ତାଳି ପକେଇ ସେଇ ଜାମା ପିନ୍ଧି ଆସିଲା ସେ ।

ଶିକ୍ଷକଙ୍କ ଆଖିରେ ଲୁହ ଟଳ ଟଳ ହେଲା । ତାଙ୍କ ମନ ସହାନୁଭୂତିରେ ଭରିଗଲା । ହାତରେ ନିଜେ ସିଲେଇ କରି ପିନ୍ଧିଛି ଜାଣି ଖୁସି ହେଲେ । ପାଠପଢ଼ାରେ ତାର ଆଗ୍ରହ ଦେଖି ତାକୁ ଆଶୀର୍ବାଦ କଲେ । ଜୀବନରେ ବଡ଼ ମଣିଷ ହେବା ପାଇଁ ହାତ ଟେକି ତାକୁ କଲ୍ୟାଣ କଲେ ।

ସତକୁ ସତ ପାଠପଢ଼ାରେ ଲୋକା ଭଲ କଲା । ସଭିଏଁ ତାକୁ ଆଦର କଲେ । ହେଲେ ମନୁ ଏକଥା ସହୁଚି କେତେବେଳେ ? ସେ ଗୁହେଁ, ତାକୁ ସମସ୍ତେ ଭଲ କହନ୍ତୁ—ଆଦର କରନ୍ତୁ । ତାରି ଆଗରେ ଲୋକାର ପ୍ରଶଂସା ସେ ସହିପାରିଲା ନାହିଁ । ମନେ ମନେ ଠିକ୍ କଲା ଯେମିତି ହେଉ ଲୋକାକୁ ପାନେ ଦେବାକୁ ହେବ ।

ଦିନକର କଥା । ଖେଳଛୁଟି ହୋଇଛି । ଲୋକା ଦେଖିଲା ମନୁ ତାରି ଆଡ଼କୁ ଦଉଡ଼ି ଆସୁଛି । ମନରେ ପ୍ରମାଦ ଗଣିଲା । କ'ଣ ପୁଣି କରି ବସିବ କିଏ ଜାଣେ ? ମନୁ ଧୀରେ ଧୀରେ ଲୋକା କାନରେ କହିଲା— ସାର୍ କହିଲେ, ବାପା ଖବର ପଠେଇଛନ୍ତି ତୁ ଶୀଘ୍ର ଘରକୁ ଯାଆ । ଲୋକା ନ ଯିବାର ଦେଖି, ସେ ଶୁଣି ପାରିଲା ଭଳି ମନୁ କହିଲା—ଶୁଣିଲି, ତୋ ବାପାଙ୍କ ଦେହ ଭଲ ନାହିଁ । ସାର୍ ତ ଅନୁମତି ଦେଇଛନ୍ତି, ଆଉ ଠିଆ ହୋଇ ରହିଲୁ କାହିଁକି ?

ବାପାଙ୍କ ଦେହ ଭଲ ନାହିଁ ଶୁଣି ଲୋକା ଦଉଡ଼ିଲା ଘରକୁ ।

ଖେଳଛୁଟି ପରେ ଶିକ୍ଷକ ଆସିଲେ । ଦେଖିଲେ ଲୋକା ନାହିଁ । ପଚାରି ବୁଝିଲେ ଘରକୁ ପଳେଇ ଯାଇଛି । ତାଙ୍କ ରାଗ ପଞ୍ଚମରେ ଉଠିଗଲା । କୁହା ନାହିଁ, ବୋଲା ନାହିଁ, ମନକୁ ମନ ଘରକୁ ପଳେଇ ଯାଉଛି । ଭଲ ପଢୁଛି ବୋଲି କ'ଣ ଇନ୍ଦ୍ର ଚନ୍ଦ୍ର ମାନିବ ନାହିଁ ?

ମନୁ ମନେ ମନେ ହସୁଥାଏ । ଏଇଥର ପିଲାପାନେ ପାଇବ । ତା ଲାଗି ସେ କ'ଣ କମ୍ ଗାଳି ଖାଇଲାଣି । ସେ ଦିନ ତା ପିନ୍ଧା ଜାମା ନେଇ କ'ଣ କହିଥିଲା ବୋଲି ତାକୁ ଠିଆ ହେବାକୁ ପଡ଼ିଥିଲା । ପାଠ ପଚାରିଲେ ସେ କହିପାରେ ନାହିଁ ବୋଲି ଲୋକା କେତେଥର ସମସ୍ତଙ୍କ ଆଗରେ ତା କାନ ମୋଡ଼ିଛି । ଏ ସବୁ କ'ଣ ସହି ହୁଏ ?

ପରଦିନ ବାପାଙ୍କୁ କାମରେ ସାହାଯ୍ୟ କରୁ କରୁ ବେଳ ଗଡ଼ିଗଲା । ଚଟାପଟ୍ କ'ଣ ଟିକିଏ ପାଟିରେ ପକେଇ ଲୋକା ଦଉଡ଼ିଲା ସ୍କୁଲକୁ । ହେଲେ ଘରର କାମ ଯୋଗୁଁ ସ୍କୁଲ ପାଠ କରିପାରିଲାନି ସେ ।

ଶିକ୍ଷକ ସମ୍ଭାଳି ପାରିଲେ ନାହିଁ । ଏକେତ ନ କହି ସ୍କୁଲରୁ ମାରିଲା ଡିଆଁ, ତେଣେ ପୁଣି ପଢ଼ା କରିନାହିଁ । ମନ ଇଚ୍ଛା ବୁଝେଇ ଛେଚିଲେ । ଲୋକାର କୌଣସି କଥା ଶୁଣିଲେ ନାହିଁ ସେ ।

ମନୁର ମନ ଭାରି ଖୁସି । ବେଶ୍ ଭଲ ହୋଇଛି । ଏଇଥର ଲୋକା ତାର ଫଳ ପାଇଛି ।

ଲୋକା ଜାଣିଲା ଏ ସବୁ ମୂଳରେ ରହିଛି ମନୁ । ତାରି ପାଇଁ ଆଜି ସେ ମାଡ଼ ଗାଳି ଖାଇଲା । ମିଛରେ ବାପା ଦେହ ଖରାପ କହି ଶିକ୍ଷକଙ୍କ ନାଆଁରେ ସେ ତାକୁ ଘରକୁ ପଠେଇ ଦେଇଥିଲା । ହେଲେ ସେ ମନୁକୁ ପଦେ ହେଲେ କିଛି କହିଲା ନାହିଁ । ଜାଣିବା ପିଲାଏ ସହାନୁଭୂତି ଦେଖେଇଲେ । ମନୁ ବିରୁଦ୍ଧରେ ଫେରାଦ୍ ହେବାକୁ ଲୋକାକୁ ମତେଇଲେ । ଲୋକା ଶୁଣି ନ ଶୁଣିଲା ପରି ରହିଲା ।

ଦି'ଦିନ ହେବ ମନୁର ଦେଖାନାହିଁ । ଲୋକାକୁ ଭଲ ଲାଗିଲା ନାହିଁ । ଯେତେ ହେଲେ ମନୁ ତାର ସାଥୀ । ତାର କିଛି ଖରାପ ହେଇନି ତ ? ମନୁ ବିଷୟରେ କେହି ତାକୁ ଖବର ଦେଇପାରିଲେ ନାହିଁ । ଛୁଟି ପରେ ସେ ମନୁ ଘରକୁ ଗଲା । ଦେଖିଲା, ମନୁ ବିଛଣାରେ ପଡ଼ିଛି । ଦେହରେ ଖଇଫୁଟା ଦାଗ । ଜର କୋପରେ ଖାଲି ବାଉଳା ହେଉଛି । କାହା କଥା ନ ମାନି ଦି'ଦିନ ଆଗରୁ ପାଣିରେ ଖୁବ୍ ଡିଆଁଥିଲା । ତାରି ଫଳ ଏବେ ପାଉଛି ସେ ।

ମନୁର ଘରେ ତା ବୋଉ ଛଡ଼ା ଆଉ କେହି ନାହାଁନ୍ତି । ଶେଯ ପାଖରେ ବସି ତା ବୋଉ ଆଖିରୁ ଲୁହ ଗଡ଼ଉଛନ୍ତି । ଦ'ଦିନ ହେଲା ଜର ଛାଡ଼ିବାକୁ ନାହିଁ । ଟୁଣ୍ଡକା ଟୁଣ୍ଡକ ଔଷଦ ଯେତେ ଦେଲେ ବି କାଟୁ କରୁନି ।

ଲୋକାର ତା ବୋଉ କଥା ମନେ ପଡ଼ିଲା । ଆହାଃ, ପୁଅର ଏ ଅବସ୍ଥା ଦେଖି ମାଆ ମନ କ'ଣ ହେଉ ନ ଥିବ ଯେ ? ମନୁ ପାଖରେ ସେ ବସି ପଡ଼ିଲା । ତା ଦେହ ମୁଣ୍ଡରେ ହାତ ବୁଲେଇ ଆଣିଲା । ନା, ଏ ଟୁଣ୍ଡକା ଟୁଣ୍ଡକ କାମ ଦେବନି । ସେ ଦଉଡ଼ିଲା ଡାକ୍ତରଙ୍କ ପାଖକୁ ।

ଏମିତି ରାତି ଦିନ ସେବାରେ ମନୁ ଧୀରେ ଧୀରେ ଭଲ ହୋଇ ଆସିଲା ।



ଯୋଉଦିନ ମନୁ ଶେଯରୁ ଉଠିଲା, ସେଦିନ ସେ ଲୋକାକୁ କୁଣ୍ଢେଇ ଘଡ଼ିଏ କାଳ କାନ୍ଦିଲା । ତା ଆଖିର ଲୁହରେ ସବୁ ଦୋଷ ତାର ଯେମିତି

ଧୋଇ ହୋଇଗଲା । ଲୋକା ବି ଥପ୍ପ ଧରି ରହି ପାରିଲାନି । ତା ଆଖିରେ ଶ୍ରାବଣର ଧାରା ଛୁଟି ଚାଲିଲା ।

ଘଡ଼କ ପରେ ମନୁ ମୁହଁ ଖୋଲିଲା । କହିଲା—"ଲୋକା, ତୁ ମୋର ସାଙ୍ଗ ନୁହଁରେ, ତୁ ମୋର ଏକା ମାଆ ପେଟର ଭାଇ ।"

ମନୁବୋଉଙ୍କ ଆଖିରେ ଲୁହ ଭରି ଆସିଲା, ଦୁଃଖରେ ନୁହେଁ ସୁଖରେ । ସ୍ନେହରେ ଲୋକାକୁ କୋଳେଇ ନେଲେ ସେ ।





# ଭୁଲର ଭୁଲ

ବଟକୃଷ୍ଣ ଓଝା

ରଜ ଛୁଟି ଦିଆ ହେବ, ଏଥି ପାଇଁ ପିଲାମାନଙ୍କ ଆଖିକୁ ନିଦ ନାହିଁ । ପରୀକ୍ଷା କମିତି ସରିବ, ଫଳ ବାହାରିବ, ଏଥିପାଇଁ ସେମାନେ ଦିନ ଗଣି ଗଣି ଅଧୀର ହୋଇ ପଡ଼ିଲେଣି । ଚାହୁଁ ଚାହୁଁ ପରୀକ୍ଷା ସରିଗଲା, ଫଳ ବି ବାହାରିଲା । ପିଲାମାନେ ଉପର ଶ୍ରେଣୀକୁ ଉଠିଲେ । ତାପରେ ଆରମ୍ଭ ହେଲା ରଜ ଛୁଟି । ପିଲାମାନଙ୍କର ଆନନ୍ଦ କହିଲେ ନ ସରେ ! କିଏ ଗୁଡ଼ି ତିଆରିରେ ଲାଗିଗଲା ତ କିଏ ଦୋଳି ଲଗାଇବାରେ ବ୍ୟସ୍ତ ରହିଲା । ଖରା ଦିନର ଖରା ବେଳଟା ମଧ୍ୟ ବାଧିଲା ନାହିଁ । କିଏ ବାହାରିଲା ମାମୁଘର ବୁଲି, କିଏ ବାହାରିଲା ନନ୍ଦନ କାନନ, କିଏ ସାଙ୍ଗ ସାଥିରେ ବଣଭୋଜିରେ ମାତିଗଲା । ମଜା ମଜାରେ କଟାଇବା ପାଇଁ ଏତେ ବଡ଼ ଲମ୍ବା ଛୁଟିଟାରେ ସମସ୍ତେ ଲାଗିପଡ଼ିଲେ ।

ଛୁଟି ଭିତରେ ରଜ ଆସି ପହଞ୍ଚିଗଲା । ନୂଆ ଜାମା, ପ୍ୟାଣ୍ଟ ପିନ୍ଧି ପୋଡ଼ ପିଠା କଳେ ଲେଖାଁ ଖାଇ ପିଲାମାନେ ଦଳଦଳ ହୋଇ ଗାଆଁ ବୁଲି ବାହାରିଲେ । ବାଗୁଡ଼ି ଖେଳରେ ଗାଆଁ ତୋଟା ଉଚ୍ଛୁଳି ପଡ଼ିଲା । ସ୍କୁଲଆଡ଼େ

ଆନନ୍ଦର ସୁଅ ଛୁଟିଗଲା । ରଜ ଦୋଳି ଗୀତ ଗାଇ ଗାଇ ଗାଆଁ ଝିଅମାନେ ଗାଆଁ ଉଚ୍ଛୁଳେଇ ଦେଲେ ।

କୁନ ପିଲାଟିଏ, ତାକ ନାଁ ତାର ବୁଲୁ । ପରୀକ୍ଷା ଫଳ ବାହାରିବା ଦିନରୁ ତା ମନରେ ଟିକେ ହେଲେ ସୁଖ ନାହିଁ । ରଜ ଛୁଟିରେ ସମସ୍ତେ ଆନନ୍ଦରେ ଅଧୀର ହେଉଥିବାବେଳେ ସେ ଖଟ ଉପରେ ମୁହଁ ମାଡ଼ି ଶୋଇଛି । ବେଳେ ବେଳେ କାଇଁ କାଇଁ ହୋଇ ବି କାନ୍ଦୁଛି । ବାପା, ବୋଉ, ସାଙ୍ଗ ସାଥି ବୁଝେଇ ବୁଝେଇ ଥକିଗଲେଣି । ତଥାପି ତାର ଏକା ଜିଦ୍ । ବାର୍ଷିକ ପରୀକ୍ଷାରେ ସେ ଫାଷ୍ଟ ନ ହୋଇ କାହିଁକି ସେକେଣ୍ଡ ହେଲା । ଅଶୋକ କାହିଁକି ଫାଷ୍ଟ ହେଲା । ସେ ତ ଛଅମାସିଆ ପରୀକ୍ଷାରେ ଫାଷ୍ଟ ହୋଇଥିଲା, ଅଶୋକ ସେକେଣ୍ଡ ହୋଇଥିଲା । ସେ କେତେ ମନ ଦେଇ ପାଠ ପଢ଼ିଥିଲା । ଅଶୋକ ବାର୍ଷିକ ପରୀକ୍ଷାରେ ଅଙ୍କରେ ତାଠାରୁ ଅଧିକ ୫ ନମ୍ବର ରଖି ଫାଷ୍ଟ ହେଲା । ନା, ନା, ସେକଥା କେମିତି ହେବ ? ସେ ତ ଅଙ୍କ କଷିବାରେ ଭୁଲ କରିନାହିଁ ।

ଏ କଥା ଭାବି ଭାବି ବୁଲୁକୁ ନିଦ ନାହିଁ । ଭୋକ ଶୋଷ ବି ନାହିଁ । ସବୁବେଳେ କାନ୍ଦୁଛି । ବୁଲୁର ମୁହଁରୁ ସତେ ଯେମିତି ହସ କିଏ ଧୋଉଛି ନେଇଛି । ରଜ ପାଇଁ ତିଆରି ହୋଇଥିବା ନୂଆ ପ୍ୟାଣ୍ଟ, ଜାମା ସେମିତି ଥୁଆ ହୋଇଛି । ରଜ ତିନି ଦିନ ସେ ଟିକେ ପଦାକୁ ବାହାରିନାହିଁ ।

ଧିରେ ଧିରେ ରଜ ପରବ ସରିଗଲା । ବୁଲୁର ପୂର୍ବବତ ଢଙ୍ଗ ବି ବଦଳିଲା ନାହିଁ । ମାମୁଁ ଚିଠି ଦେଇଥିଲେ, ତାଙ୍କ ଘରକୁ ବୁଲି ଯିବା ପାଇଁ । ରଜ ଦିନ ବାପା ବୋଉ ଯେତେ କହିଲେ ବୁଲୁ ଜମା ମାନିଲା ନାହିଁ । ସମସ୍ତେ ବୁଝେଇ ବୁଝେଇ ଥକିଗଲେଣି । ରଜ ଛୁଟିପରେ ସ୍କୁଲ ସବୁ ଖୋଲିଲା । ପିଲାମାନେ ରଜଦିନର ନୂଆ ପୋଷାକ ପିନ୍ଧି ସ୍କୁଲକୁ ଆସିଲେଣି । ସାର୍ ଙ୍କଠାରୁ ବହି ତାଲିକା ଧରି ଦୋକାନ ଆଗରେ ଭିଡ଼ ବି ଜମେଇ ଦେଲେଣି । କିନ୍ତୁ ବୁଲୁର ସେଇ ଏକା ଜିଦ୍ । ସେ କାହିଁକି ଆଉ ପାଠ ପଢ଼ିବ । ବୁଲୁର ମାମୁ ଏ ଖବର ପାଇ ଆସି ପହଞ୍ଚିଲେ । ବୁଲୁକୁ ବୁଝେଇ ଶୁଝେଇ ତାଙ୍କ ଗାଆଁକୁ ନେଇଗଲେ ।

ନିଜ ଗାଆଁରେ ବୁଲୁକୁ ଭଲ ଲାଗୁ ନ ଥିଲେ ମଧ୍ୟ ମାମୁଘର ଗାଆଁରେ ନୂଆ ସାଙ୍ଗ ସାଥିଙ୍କ ସହିତ ଟିକେ ବୁଲାବୁଲି କଲାଣି । ମାମୁଙ୍କ

ଝିଅ କୁନ ପୁଅ ମନୁ ସାଙ୍ଗରେ ହସ ଖେଳରେ ମାତିଲାଣି । ତଥାପି ମନ ଭିତରେ ସେହି କଥା ଗୋଳେଇ ଘାଣ୍ଟି ହେଉଥାଏ । ମାମୁ ବୁଲୁକୁ ପାଖରେ ବସାଇ ଖୋଇ ଦିଅନ୍ତି, ସଞ୍ଜବେଳେ ମଜା ଗପ ବି କହନ୍ତି । ସେଦିନ ସୋମବାର ହୋଇଥାଏ ସକାଳୁ ମାଇଁ ବାହାରିଲେ, ଗାଆଁ ମୁଣ୍ଡରେ ଥିବା ଶିବ ମନ୍ଦିରକୁ । ଗୋଟିଏ ଥାଳିରେ ନଡ଼ିଆ, ଛେନା, କଦଳୀ ଭୋଗ ଧରି ବୁଲୁ ଚାଲିଥାଏ । ଆଗରେ ଦଉଡ଼ି ଦଉଡ଼ି ଚାଲିଥାନ୍ତି 'କୁନ' ଆଉ 'ମନୁ' । ଟିକେ ରହି ଡାକୁ ଥାଆନ୍ତି, "ବୁଲୁଭାଇ । ଆସୁନା କାହିଁକି ? ବୁଲୁ ଗୋଡ଼ ପଛରୁ କିଏ ଯେମିତି ଟାଣି ଧରୁଥାଏ ।

ଗାଆଁ ମୁଣ୍ଡରେ ଗୋକର୍ଣ୍ଣେଶ୍ୱରଙ୍କ ମନ୍ଦିର । ପ୍ରାୟ ପଚିଶ ଖଣ୍ଡି ଗ୍ରାମର ଲୋକମାନେ ଠାକୁରଙ୍କୁ ନିଜର ସୁଖଦୁଃଖ ଜଣାଇ ମୁଣ୍ଡିଆ ମାରନ୍ତି । ମାଇଁ ସିନା ବୁଲୁକୁ ବାଧ କରି ଡାକି ଆଣିଥାନ୍ତି, କିନ୍ତୁ ତା ମନରେ ଟିକେ ହେଲେ ଆନନ୍ଦ ନ ଥାଏ । ପରୀକ୍ଷା ପୂର୍ବରୁ ସେ କେତେ ଠାକୁରଙ୍କୁ ଭୋଗ ଯାଚିଛି, କେହି ତା ଦୁଃଖ ଶୁଣିଲେ ନାହିଁ । ଶିବଠାକୁର କଣ ସତରେ ତା ଦୁଃଖ ଶୁଣିବେ । ଏହି କଥା ଭାବୁ ଭାବୁ ସେ ମନ୍ଦିର ପାଖରେ ପହଞ୍ଚି ଯାଇଥିଲା ।

ମନ୍ଦିର ଭିତରେ ସେ ଦିନ ଘୋର ଭିଡ଼ । କୁନ କୁନ ପିଲାଙ୍କଠାରୁ ଆରମ୍ଭ କରି ବଡ଼ ବଡ଼ମାନେ ବି ଠାକୁରଙ୍କୁ ଦର୍ଶନ କରିବାକୁ ଆସିଥାନ୍ତି । ମାଇଁ ବାଟରେ ବୁଲୁକୁ ଠାକୁରଙ୍କ ମହିମା ବୁଝାଇ କହିଥାନ୍ତି । ଭୋଗ ଥାଳିଟି ଥୋଇ ବୁଲୁ ଠାକୁରଙ୍କୁ ମୁଣ୍ଡିଆ ମାରିଲା, ମନେ ମନେ ଦୁଃଖ ଜଣାଇଲା । ମାଇଁ ପୂଜକଙ୍କୁ କହି ବୁଲୁ ନାଆଁରେ ଦୁଧ ଢଳାଇଲେ । ସବୁ କାମ ସରିଲା ପରେ ପୁଣି ଠାକୁରଙ୍କୁ ମୁଣ୍ଡିଆ ମାରି ଭୋଗ ଥାଳିଟି ଧରି ମାଇଁଙ୍କ ପଛେ ପଛେ ସେ ଫେରି ଆସିଲା ।

ମନ୍ଦିରରୁ ଫେରିବା ପରେ ବୁଲୁକୁ କାହିଁକି କାନ୍ଦ କାନ୍ଦ ଲାଗିଲା । ସତେ କଣ ଠାକୁର ତା ଦୁଃଖ ଦୂର କରିଦେବେ । ଏକଥା ଭାବି ଭାବି ତା ଆଖିରୁ ଝରଝର ଲୁହ ବୋହିବାକୁ ଲାଗିଲା । ବାଟରେ ମାଇଁଙ୍କୁ ଲୁଚାଇ ସେ ଲୁହ ପୋଛି ପକେଇ ପଛେଇ ପଛେଇ ଆସୁଥାଏ । ଘରେ ପହଞ୍ଚି ଭୋଗ ପାଇଲା । ପରେ ପରେ ସାଙ୍ଗ ସାଥିମାନେ ଆସି ଜୁଟିଗଲେ । ସେ ଖେଳିବାକୁ ଚାଲିଗଲା । ଏଠିକି ଆସିବା ପରେ ତାକୁ ଆଜିଠାରୁ ଟିକେ ଭଲ ଲାଗିଲାଣି ।

ଖେଳ ସାରି ଫେରୁ ଫେରୁ ସଞ୍ଜ ହୋଇଗଲା । ରାତିରେ ମାମୁ ସାଙ୍ଗରେ ଖାଇସାରି ମାଈଙ୍କ କୋଳରେ ଶୋଇ ପଡ଼ିଲା ।

ନିଘୋଡ଼ ନିଦରେ ଶୋଇଥିବା ବେଳେ ବୁଲୁ ଜାଣି ପାରିଲା, କିଏ ଯେମିତି ତାକୁ ଡାକୁଛନ୍ତି । ତୁହଁ କିନା ତା ନିଦ ଭାଙ୍ଗିଗଲା । ଆରେ ଏ କଣ ? ଆଲୁଅରେ ଘର ସାରା ହସି ଉଠୁଛି । ସେ ଆଲୁଅରେ ତା ଆଖି ବୁଜି ହୋଇ ଯାଉଥାଏ । ଘର ସାରା ଝୁଣାର ମହକ । କିଏ ଜଣେ କହୁଥାନ୍ତି—"ବୁଲୁ ! ବୁଲୁ ଉଠ ।" ବୁଲୁ ଆଖି ପତା ଖୋଲି ଚାହିଁଲା । ଆରେ ! ସେ ନିଜ



ଆଖିକୁ ବିଶ୍ୱାସ କରି ପାରିଲାନାହିଁ । ଏ ଯେ ସେହି ଶିବ ଠାକୁର । ମାଈଁ ତାଙ୍କର କଥା ବାବଦରେ କହୁଥିଲେ । ମୁଣ୍ଡରେ ବିରାଟ ଜଟା । ଗୋଟିଏ ହାତରେ ତ୍ରିଶୂଳ । ଆଉ ଗୋଟିଏ ହାତରେ ଡମ୍ବରୁ । ବେକରେ ବିରାଟ ରୁଦ୍ରାକ୍ଷ ମାଳା ପଡ଼ିଛି । ସେ ବାଘ ଛାଲ ପିନ୍ଧିଛନ୍ତି । ବାସୁଆ ବଳଦ ଉପରେ ବସିଛନ୍ତି ।

ଠାକୁର ହସି ହସି କହିଲେ, "ବୁଲୁ ! ତୁମେ ପରା ଆଜି ମୋ ମନ୍ଦିରକୁ ଯାଇଥିଲ, ହେଲେ ତୁମ ଭୋଗ କାହିଁ ?" ଗୋଟିଏ କଦଳୀ ପତ୍ରରେ ନଡ଼ିଆ, ଛେନା, କଦଳୀ ଯାହା ଠାକୁରଙ୍କୁ ଦିଆଯାଇଥିଲା, ତା ଆଗରେ ଥୋଇଦେଲେ । ବୁଲୁ ଆଉ କହିବ କଣ ? ହାତଯୋଡ଼ି ଠାକୁରଙ୍କୁ ଜୁହାର ହେଲା ।

ଠାକୁର ହସି ହସି କହିଲେ, "ବୁଲୁ ! ତୁମେ ଆଜି ମୋ ମନ୍ଦିରକୁ ଯାଇଥିଲ ନା ? ହେଲେ ତୁମେ ଦେଇଥିବା ଭୋଗ ଏ ପର୍ଯ୍ୟନ୍ତ ମୁଁ ଛୁଇଁନାହିଁ କାହିଁକି କହିଲ ?" ବୁଲୁ ଆଉ କହିବ କଣ । ଠାକୁରଙ୍କ କଥା ଶୁଣି ସେ କାବା ହୋଇ ଗୁହିଁ ଥାଏ ।

ଠାକୁର କହିଲେ, "ମନ ଦେଇ ସିନା ଠାକୁରଙ୍କୁ ଡାକିଲେ ସେ ତୁମ କଥା ଶୁଣନ୍ତି, ଭୋଗ ନିଅନ୍ତି । ତୁମେ ତ ଆଜି ମୋତେ ଆଦୌ ମନ ଦେଇ ଡାକି ନାହିଁ । ଖାଲି ତୁମ ମାଇଁଙ୍କ କଥାରେ ବାଧ୍ୟ ହୋଇ ମୋ ମନ୍ଦିରକୁ ଯାଇଥିଲ । ସେଥିରେ କ'ଣ ତୁମ ମନ ଥିଲା ? ଏତିକିରେ କଣ ଠାକୁର ଖୁସି ହୋଇଯିବେ ? ହଉ, ଯାହା ହବାର ହେଲା, ମୁଁ ତୁମର ଭୋଗ ଫେରାଇ ଦେବାକୁ ଆସିଛି । ନିଅ ଭୋଗ ଧର ।"

ବୁଲୁ ଏ କଥା ଶୁଣି ଏକବାରେ କାବା ହୋଇଗଲା । ଠାକୁରେ ତା ମନକଥା ସତରେ ଜାଣି ପାରିଛନ୍ତି । ସେ ପୁଣି ମୁଣ୍ଡିଆ ମାରି କାନ୍ଦି କାନ୍ଦି କହିଲା, "ମୁଁ ଭୁଲ କରିଛି । ମୋତେ କ୍ଷମା କରନ୍ତୁ । ମୋ ଭୋଗ ନିଅନ୍ତୁ ।"

ଠାକୁର କହିଲେ, "ବୁଲୁ ! ତୁମେ ଆଜି ଗୋଟିଏ ଭୁଲ କରିନାହଁ, ଆହୁରି ମଧ୍ୟ ଭୁଲ କରିଛ । ଏ ପରୀକ୍ଷାରେ ତୁମର କମ୍ ନମ୍ବର ରହିଲା ବୋଲି ତୁମେ ମନ ଦୁଃଖ କରିଛ । ଆଚ୍ଛା କହିଲ, ଛଅ ମାସିଆ ପରୀକ୍ଷା ବେଳକୁ ଯେମିତି ମନଦେଇ ପଢ଼ିଥିଲ, ଏଥର ବାର୍ଷିକ ପରୀକ୍ଷା ପୂର୍ବରୁ କ'ଣ ସେମିତି ମନ ଦେଇ ପଢ଼ିଛ ? କେବେ ନୁହେଁ । ସେ ପରୀକ୍ଷାରେ ତୁମର ଅଧିକ ନମ୍ବର ରହିଲା ବୋଲି ମନ କୁଣ୍ଢେ ମୋଟ ହୋଇଗଲା । ଆଉ ଆଗ ଭଳି ମନଦେଇ ପଢ଼ିଲ ନାହିଁ । ଅଶୋକର କମ୍ ନମ୍ବର ରହିବାରୁ ସେ ବାର୍ଷିକ ପରୀକ୍ଷାରେ କିପରି ଅଧିକ ନମ୍ବର ରଖିବ, ମନ ଦେଇ ପଢ଼ିଲା । କିନ୍ତୁ ତୁମେ ପାଠ ପଢ଼ାରେ ଢିଲା କଲ । ସେଥିପାଇଁ ତୁମର କମ୍ ନମ୍ବର ରହିଲା । ତୁମେ ତା ତଳକୁ ରହିଗଲ । ଏ କଣ ତୁମର ଭୁଲ ନୁହେଁ ? ମନେ ପକାଇଲ ।"

ଠାକୁରଙ୍କ କଥା ଶୁଣି ବୁଲୁ ନିଜର ଭୁଲ ବୁଝିପାରିଲା । ସେ ପାଦତଳେ ପଡ଼ିଯାଇ କହିଲା, "ମୋତେ କ୍ଷମା କରନ୍ତୁ, ମୁଁ ଆଉ ଏମିତି ଭୁଲ କେବେ କରିବି ନାହିଁ ।"

ଶିବ ଠାକୁର କହିଲେ, "ବୁଲୁ ! ମୁଁ ତୁମକୁ ଆଶୀର୍ବାଦ କରୁଛି । ତୁମେ ଆଜିଠାରୁ ମନ ଲଗାଇ ପାଠ ପଢ଼ି, ଶ୍ରେଣୀରେ ସବୁବେଳେ ପ୍ରଥମ ହୁଅ । କାମ ନ କରି ଅଯଥା ମନ କଷ୍ଟ କର ନାହିଁ । ମନ ଲଗାଇ କାମ କଲେ ନିଶ୍ଚୟ ସୁଫଳ ମିଳିବ । ଏକଥା ସବୁବେଳେ ଠିକ୍ । ରଜ ଛୁଟିଟି ତୁମେ କି ଦୁଃଖରେ କଟାଇଛ କହିଲ ? ତୁମେ ସିନା ମୋତେ ମନ ଦେଇ ଡାକି ନାହଁ, କିନ୍ତୁ ତୁମ ଆଖିର ଲୁହ, ମୁଁ ସହି ପାରିଲି ନାହିଁ । ମନ୍ଦିରରୁ ମୁଁ ତୁମ ପାଖକୁ ଧାଇଁ ଆସିଲି । ହଉ, ମୁଁ ଯାଉଛି, ତୁମେ ମନ ଲଗାଇ ପାଠ ପଢ଼ିଲେ, ମୁଁ ଅଧିକ ଖୁସି ହେବି ।"

ଚାହୁଁ ଚାହୁଁ ସେ ଅନ୍ତର୍ଦ୍ଧାନ ହୋଇଗଲେ । ଏତିକିବେଳେ ବୁଲୁ ଚାହିଁ ଦେଲା । ଘର ସାରା କଟି କଟି ଅନ୍ଧାର ।

ସେ ଉଠି ପଡ଼ି କହିଲା, "ମାଇଁ ! ମାଇଁ ! ମୁଁ ଆଜି ଘରକୁ ଯିବି ।" ମାଇଁ ପାଖରେ ଶୋଇଥିଲେ । ବୁଲୁ ଡାକରେ ତାଙ୍କର ନିଦ ଭାଙ୍ଗିଗଲା । ବୁଲୁକୁ କୋଳକୁ ଆଉଜାଇ ଆଣି କହିଲେ, "ବୁଲୁ ! ବାପାଟା ପରା । ରାତିଟାରେ କାହିଁକି ବଳବଳେଉଛୁ । ସ୍ୱପ୍ନ ଦେଖିଲୁ କି ? ଶୋଇପଡ଼ ।" ବୁଲୁ କହିଲା—"ନାଇଁ ମାଇଁ, ମୁଁ ଆଜି ଘରକୁ ଯିବି । ଆମ ସ୍କୁଲରେ ପାଠପଢ଼ା ଆରମ୍ଭ ହୋଇଯିବଣି । ମୋ ସାଙ୍ଗସାଥିମାନେ କେତେ ନୂଆ ପାଠ ପଢ଼ି ଯିବେଣି । ମୁ ଆଜି ଘରକୁ ଯିବି, ମାଇଁ । ମନ ଦେଇ ପାଠ ପଢ଼ିବି ।"

ମାଇଁ ଦେଖିଲେ ବୁଲୁ ଆଖିରେ ନିଦ ନାହିଁ । ସେ ଉଠିଲାଣି । ତା ମନ ବି ଖୁସି ଅଛି ।

ସେ ହସି ହସି ବୁଲୁକୁ ଆଦରରେ ଜାବୁଡ଼ି ଧରି କହିଲେ, —"ହଉ, ସକାଳୁ ଉଠି ଗାଧୁଆ ପାଧୁଆ ସାର । ମାମୁଙ୍କୁ କହିବି ଛାଡ଼ି ଦେଇ ଆସିବେ ।"

ଠିକ୍ ଏତିକିବେଳେ ଦାଣ୍ଡ ଗଛ ଉପରେ କାଉ କା' କା' ଡାକ ଛାଡ଼ିଲା ।



# ପିଲାଟି ମରଣମୁହଁରୁ ଫେରିଲା

ଡଃ ଜଗନ୍ନାଥ ମହାନ୍ତି



କଥାଟି ତୁମକୁ ମିଛ ଲାଗିପାରେ । କିନ୍ତୁ ମୋତେ ପୂରା ସତ । ମୋର ଏଇଟା ପରା ଅଙ୍ଗଲଗା ଅନୁଭୂତିର କଥା !

୧୯୮୧ ମସିହା ଜୁଲାଇ ମାସର ପହିଲା । ବର୍ଷା ଆରମ୍ଭ ହୋଇଥିଲେ ହେଁ ଖରାଦିନ ଯାଇନାହିଁ । ଖୁବ୍ ଗରମ । ଗମ୍ ଗମ୍ ଝାଳ ବୋହିଯାଉଛି ।

ବ୍ରହ୍ମପୁର ଡାକ୍ତରଖାନା । ପିଲାଠାରୁ ବଡ଼ ଯାଏ ସବୁପ୍ରକାର ରୋଗୀ । ନାନାପ୍ରକାର ରୋଗ ବିରୁଦ୍ଧରେ ଏଠାରେ ଲଢ଼େଇ ଚାଲିଛି । ସେଥିପାଇଁ ଡାକ୍ତରମାନେ ଦଳବଳ ଆଉ ହାତହତିଆର ଧରି ଲାଗିଛନ୍ତି ।

ଆମ ଝିଅ ଟିଙ୍କୁର ସେମିତି ଏକ ରୋଗ ବିରୁଦ୍ଧରେ ସେଦିନ ଲାଗିଥାଏ ଏକ ପ୍ରବଳ ଲଢ଼େଇ । ବଡ଼ ଡାକ୍ତର ଶାରଦାବାବୁ ଅସ୍ତ୍ର ଚିକିତ୍ସା କରିଥାନ୍ତି । ମୁଁ ଆଉ କୁନାଭାଇ ଝିଅକୁ ସେଦିନ ରାତିରେ ଜଗିବସିଥାଉ । ହାତରେ ଛୁଞ୍ଚି ଫୋଡ଼ାଯାଇ ଅନବରତ ତାକୁ ସାଲାଇନ୍ ଦିଆଯାଉଥାଏ । ନାକରେ ନଳୀଟାଏ ଲାଗି ଅକ୍ସିଜେନ ଦିଆଯାଉଥାଏ । ଅପରେସନ୍ କ୍ଷତରୁ ମଧ୍ୟ

ନଳୀଟାଏ ଲାଗି ଖଟିଆ ତଳ ବୋତଲରେ ପଶିଥାଏ । ଦେହରେ ଝିଅର ଭୀଷଣ କଷ୍ଟ । ସେ ଛଟପଟ ହେବା ସ୍ୱାଭାବିକ । ମାତ୍ର ଟିକିଏ ହାଲିଗଲେ ସବୁ ଅସୁବିଧା । ସବୁ ଆଡ଼କୁ ନଜର ରଖି ଆମେ ଦୁହେଁ ଖଟିଆର ଦୁଇପଟେ ଜଗି ବସିଥାଉ । ସ୍ତ୍ରୀ ଆସି ବସିଲେ ଆମ ଦୁହିଁଙ୍କ ଭିତରୁ ଜଣେ କିଏ ବାହାରକୁ ଆସୁ ।

ରାତି ପ୍ରାୟ ଅଧ ହେବ । ବର୍ଷେ ଦେଢ଼ ବର୍ଷର ପିଲାଟାଏ । ତାକୁ ଦଳେ ଲୋକ ଆଣି ସେଇ କୋଠରୀରେ ପହଞ୍ଚିଲେ । କେନ୍ଦ୍ରାପଡ଼ା ବଜାରର ଏକ ସାଇକେଲ ଦୋକାନୀ । ତାଙ୍କର ଏକମାତ୍ର ପୁଅ ସେଇ ପିଲାଟି । ବାପାଙ୍କର ସାଇକେଲ ଦୋକାନରେ ଖେଳୁଥିଲା । ସବୁରି ଅଲକ୍ଷ୍ୟରେ ସାଇକେଲ ଚକାରେ ଲାଗୁଥିବା ବଲ୍‌ରୁ ଦୁଇଟି ଗିଳି ଦେଇଛି । ଗୋଟିଏ ସିନା ପେଟ ଭିତରକୁ ଗଳିଗଲା, ଆଉ ଗୋଟିଏ ଗୁଣ୍ଟିରେ ଲାଗି ରହିଲା । ଯେତେ ଚେଷ୍ଟାକଲେ ବି ଖସିଲା ନାହିଁ ।

ପିଲାଟି କ୍ରମେ ନିଶ୍ୱାସ ମାରିବାରେ ଭାରି କଷ୍ଟ ଅନୁଭବ କଲା । ତେଣୁ ତାର ବେକ ପାଖରେ ଗୋଟିଏ କଣା କରାଗଲା । ସେଇବାଟେ ପବନ ଯାଇ ପାରିଲା ଆଉ ଗୋଟିଏ ଚକଲଗା ମେସିନ୍ ସାହାଯ୍ୟରେ କଫ ପ୍ରଭୃତି ବାହାର କରାଗଲା । ସେତେବେଳେ ପିଲାଟିର ଖୁବ୍ ଯନ୍ତ୍ରଣା ହେଉଥାଏ । ସେ ଭାରି ଛଟପଟ ହୁଏ । ତାର ଗୋଡ଼ହାତକୁ ମାଆବାପା ଆଉ ବନ୍ଧୁମାନେ ମାଡ଼ି ବସନ୍ତି । ସେ ଖୁବ୍ କନ୍ଦାକଟା କରେ । କିନ୍ତୁ ତାକୁ ଶୁଣୁଛି କିଏ ? ତାର ଜୀବନ ରକ୍ଷା କରିବାକୁ ସବୁରି ଇଚ୍ଛା, ପ୍ରାଣାନ୍ତକ ଚେଷ୍ଟା ।

ପିଲାଟି ବିଚରା କାନ୍ଦି କାନ୍ଦି, ଛଟପଟ ହୋଇ ହାଲିଆ । ନିଜର ଲୋକଙ୍କୁ ବି ସେ ଡରିଗଲା । ସେମାନଙ୍କୁ ପାଖରେ ଦେଖିଲେ ସେ କାନ୍ଦି ପକାଉଛି । ପ୍ରତି ଘଣ୍ଟାଏ ଦି'ଘଣ୍ଟାରେ ସେମିତି ତାକୁ ମାଡ଼ି ବସିବା ଆଉ ଚକୀଟିକୁ ଘର୍ ଘର୍ ବୁଲାଇ ତା ତଣ୍ଟି ଓ ଗୁଣ୍ଟିରୁ କଫ ସଫା କରିବାରେ ସମସ୍ତେ ଲାଗିଥାନ୍ତି ।

ଆମ ପାଖକୁ ଲାଗି ଖଟିଆ ଉପରେ ପିଲାଟି ବିଚରା ନିଃସହାୟ ହୋଇ ପଡ଼ିଥାଏ । ଦେଖିଲେ ଭାରି ବିକଳ ଲାଗୁଥାଏ । ତାର ଦୁଃଖକଷ୍ଟ ଦେଖି ଆମ ଆଖିରୁ ଲୁହ ଝରୁଥାଏ । ଅପରେସନ ହୋଇଥିବା ନିଜ ଝିଅର ଯନ୍ତ୍ରଣାଠାରୁ ନିହାତି ପିଲାଟିର କଷ୍ଟ କମ୍ ନୁହେଁ ।

ଏମିତି ଦୁ'ତିନ ଦିନ କଟିଲା । ସେଇ ଧର୍ ଧର୍, ସେଇ କନ୍ଦାକଟା, ସେଇ ଛଟପଟ । ତା ଗୁନ୍ତିରୁ ବଲ୍‌ଟି ବାହାର କରିବାର କୌଣସି ସଫଳ ଚେଷ୍ଟା ନାହିଁ । ଥରେ ଡାକ୍ତରବାବୁଙ୍କୁ ପଚାରିଲି—ଆଜ୍ଞା, ଏ ପିଲାଟି ପାଇଁ କ'ଣ ବ୍ୟବସ୍ଥା କରୁଛନ୍ତି ? କେତେ କଷ୍ଟ ପାଉଛି ସତେ !

ସେ ମଧ୍ୟ ଦୁଃଖର ସହିତ କହିଲେ—କଣ କରିବ କିଛି ଠିକ୍ କରିପାରୁନି । ଏତେ ସାନ ପିଲାଟିର ଗୁନ୍ତି ଅପରେସନ୍ କରି ବଲ୍‌ଟିକୁ ବାହାର କରିବା ନିରାପଦ ନୁହେଁ ।

ମୁଁ ବ୍ୟସ୍ତ ହୋଇ ପଚାରିଲି—ତେବେ କଣ କରିବାକୁ ଭାବୁଛନ୍ତି ?

ଡାକ୍ତରବାବୁ କହିଲେ—ମୁଁ ଭାବୁଛି, ଯଦି ଗୋଟାଏ ଟାଣୁଆ ଚୁମ୍ବକ (ମାଗ୍ନେଟ୍) ମିଳନ୍ତା, ତାକୁ ଲଗାଇ ଲୁହା ବଲ୍‌ଟିକୁ ବାହାର କରିବାକୁ ଚେଷ୍ଟା କରନ୍ତି ।

ମୁଁ ପଚାରିଲି—ଚୁମ୍ବକ କଣ ମିଳିବନି ? ଖଲିକୋଟ କଲେଜ କିମ୍ବା ହାଇସ୍କୁଲ ବିଜ୍ଞାନାଗାରରେ ତ ନିଶ୍ଚୟ ଚୁମ୍ବକ ଥିବ । ସେଠାରୁ ଆଣିଲେ ହୁଅନ୍ତା ନାହିଁ ?

ସେ କହିଲେ—ମୁଁ ତ ଚେଷ୍ଟା କରୁଛି । କାହିଁ କେଉଁଠାରୁ ତ ମିଳୁନି, ଦେଖାଯାଉ ।

ଏଣେ ମୁଁ ଅତି ପାଖରୁ ପିଲାଟିର କଷ୍ଟ, ମାଆଙ୍କର କାନ୍ଦ, ବାପାଙ୍କର ଚିନ୍ତା ଆଉ ଅନ୍ୟମାନଙ୍କର ବ୍ୟସ୍ତତା ଦେଖୁଛି । ସମସ୍ତେ ଖାଲି ହାହୁତାଶ ଭିତରେ ଗଲିଛନ୍ତି ।

ଏହି ସମୟ ଭିତରେ ଥରେ ଦେଖାହେଲା ବାଣପୁରର ବନ୍ଧୁ ବୈଦ୍ୟନାଥବାବୁଙ୍କ ସହିତ । ସେ ବ୍ରହ୍ମପୁରର ଜଣେ ସ୍କୁଲ ସବ୍‌ଇନ୍‌ସ୍‌ପେକ୍ଟର । ମୋ ସାଥିରେ ତାଙ୍କର ବହୁ ଦିନର ଚିହ୍ନା ପରିଚୟ ଆଉ ସଦ୍‌ଭାବ ।

ମୋତେ ସେ ଡାକ୍ତରଖାନାରେ ଦେଖି ଥରେ କହିଲେ—ସାର୍, ଏଇ ଶନିବାର ଦିନ ଆମ ସର୍କଲ ଶିକ୍ଷକମାନଙ୍କର ଏକ କେନ୍ଦ୍ର ବୈଠକ ହେଉଛି । ଆପଣ ଦୟାକରି ସେଥିରେ ଯୋଗ ଦେଲେ ଭାରି ଭଲ ହୁଅନ୍ତା ! ଶିକ୍ଷକମାନେ ବି ଖୁବ୍ ଖୁସି ହୁଅନ୍ତେ ।

ମୁଁ କହିଲି—ହଉ ଯିବା । ଡାକ୍ତରଖାନାର ହୋହଲ୍ଲା, କନ୍ଦାକଟା, ଚିତ୍କାର, ଯନ୍ତ୍ରଣାର ପରିବେଶରୁ ଟିକଏ ମୁକୁଳିଯିବି । ଶିକ୍ଷକମାନଙ୍କ ଗହଣରେ ବସି ଶିକ୍ଷା ସମ୍ପର୍କରେ ଆଲୋଚନା କରିବା । ଆପଣ ଆସିବେ । ମୁଁ ଅପେକ୍ଷା କରିଥିବି । ସାଥି ହୋଇଯିବା ।

ସତକୁ ସତ, ସେଦିନ ବୈଦ୍ୟନାଥବାବୁ ଆସି ଠିକ୍ ସମୟରେ ପହଞ୍ଚିଲେ । ତାଙ୍କ ସ୍କୁଟର ପଛରେ ବସି ମୁଁ ଗଲି । କେନ୍ଦ୍ର ବୈଠକ ସରିଲା । ନାନାପ୍ରକାର ଆଲୋଚନା ଭିତରେ ମୁଁ ପିଲାଟିର ଦୁଃଖ ଆଉ ସବୁରି ଅସହାୟତା ଜଣାଇଲି ।

ଚୁମ୍ବକଟିଏ ହେଲେ ଚେଷ୍ଟା କରିଯାନ୍ତା, ଶୁଣି ଜଣେ ବନ୍ଧୁ କହିଲେ—ଆମର ସାମାଜିକ ଶିକ୍ଷା ଅଫିସର ଚନ୍ଦ୍ରଶେଖରବାବୁ ଗୋଟିଏ ନୂଆପ୍ରକାର ଚିକିତ୍ସା ଆରମ୍ଭ କରିଛନ୍ତି ଚୁମ୍ବକ ସାହାଯ୍ୟରେ । ତାଙ୍କୁ କହିଲେ ସେ ସାହାଯ୍ୟ କରନ୍ତେ !

ମୁଁ କହିଲି—ଚାଲ, ତେବେ ଆଗ ତାଙ୍କ ପାଖକୁ ଯିବା ।

ବୈଦ୍ୟନାଥବାବୁ ମୋତେ ସଙ୍ଗେ ସଙ୍ଗେ ତାଙ୍କ ପାଖକୁ ନେଇଗଲେ । ସେଠାରେ ପହଞ୍ଚି ମୋର ମନ କଥା କହିଲି ।

ଚନ୍ଦ୍ରଶେଖରବାବୁ ସହାନୁଭୂତିର ସହିତ ମୋ କଥାସବୁ ଶୁଣିଲେ । ମାତ୍ର କହିଲେ—ମୋ ପାଖରେ ବିଭିନ୍ନ ପ୍ରକାର ଚୁମ୍ବକ ଅଛି । ହେଲେ ମୁଁ କାହାକୁ ଦେଇପାରିବି ନାହିଁ । ସେଥିରେ ବହୁ ବିପଦ ରହିଛି ।

ମୁଁ ମନଦୁଃଖ କରି କହିଲି—କଣ ସବୁ ବିପଦ ଅଛି ? ଚୁମ୍ବକ ଛୁଆଁଇ ଡାକ୍ତରବାବୁ ତ ଲୁହା ବଲ୍‌ଟିକୁ ବାହାର କରିବାକୁ ଚେଷ୍ଟା କରିବେ । ପିଲାଟି ଭାରି କଷ୍ଟ ପାଉଛି, ଚନ୍ଦ୍ରଶେଖରବାବୁ ।

ସେ କହିଲେ—ମୁଁ ଆପଣଙ୍କ ମନର ଅବସ୍ଥା ବୁଝୁଛି । ପିଲାଟିର ଦୁଃଖ ଦୂର କରିବାକୁ ମୁଁ ଚାହୁଁଛି । ମାତ୍ର ଚୁମ୍ବକ ବ୍ୟବହାର କରିବା ଯେତେ ସହଜ ଭାବୁଛନ୍ତି, ତାହା ନୁହେଁ ।

ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି—କ'ଣ ସେଥିରେ ଅସୁବିଧା ଅଛି କହନ୍ତୁ ତ ।

ଚନ୍ଦ୍ରଶେଖରବାବୁ ବୁଝାଇଲେ—ଆମ ରକ୍ତରେ ଆପଣ ଜାଣନ୍ତି ଲୁହା ଅଂଶ ମଧ୍ୟ ଅଛି । ରକ୍ତର ସେହି ଲୁହା ଅଂଶକୁ ଚୁମ୍ବକ ଟାଣିଥାଏ । ଫଳରେ ପିଲାର ଗୁଣ୍ଡିପାଖରେ ଅଧିକ ଶକ୍ତିଶାଳୀ ଚୁମ୍ବକ ଲଗାଇଲେ ହୁଏତ ତାର ରକ୍ତ ଚଳନା ବନ୍ଦ ହୋଇ ଯାଇପାରେ ।

ମୁଁ କାବା ହୋଇ ତାଙ୍କୁ ଚାହିଁରହିଲି । ନିରାଶ ହୋଇ ପଚାରିଲି—ତେବେ ଡାକ୍ତରବାବୁ କିପରି ଗୋଟାଏ ଚୁମ୍ବକ ହେଲେ ଲୁହା ବଲ୍‌ଟିକୁ କାଢ଼ିଦେବେ ବୋଲି କହିଥିଲେ ? କଣ ତେବେ ଉପାୟ ଅଛି, ଆପଣ କହନ୍ତୁ ଚନ୍ଦ୍ରଶେଖରବାବୁ ?

ଚନ୍ଦ୍ରଶେଖରବାବୁ କହିଲେ—ଆପଣ ଡାକ୍ତରଙ୍କୁ ପଚାରନ୍ତୁ । ଏଥିରେ କି ଅସୁବିଧା ଅଛି ସେ ମଧ୍ୟ କହିବେ । ତେବେ ଆପଣ ଯଦି କହୁଛନ୍ତି ମୁଁ ନିଜେ ସବୁ ପ୍ରକାର ଚୁମ୍ବକ ଧରି ଯିବି । ଯେଉଁଟା ପିଲାକୁ ଚାହିଁ ଉପଯୁକ୍ତ ହେବ, ତାକୁ ଦେଖି ବ୍ୟବହାର କରିବାକୁ ଦେବି ।

ମୁଁ ଖୁସି ହୋଇ କହିଲି—ତେବେ ଠିକ୍ ଅଛି । ମୁଁ ଏବେ ଡାକ୍ତରବାବୁଙ୍କ ପାଖକୁ ଯାଉଛି । ତାଙ୍କଠାରୁ ବୁଝି ମୁଁ ଆପଣଙ୍କୁ ଏଇ ବୈଦ୍ୟନାଥବାବୁଙ୍କ ହାତରେ ଜଣାଇବି । ଆପଣ ଦୟାକରି ଡାକ୍ତରଖାନା ନିଶ୍ଚୟ ଯିବେ । ଏତିକି କଷ୍ଟ କରିବାକୁ ମୋର ବିଶେଷ ଅନୁରୋଧ ।

ମୁଁ ବୈଦ୍ୟନାଥବାବୁଙ୍କ ସାଥିରେ ଡାକ୍ତରଖାନାକୁ ଫେରିଲି । ସାଧାରଣତଃ ଶନିବାର ଦିନ ଉପରବେଳା ଡାକ୍ତରବାବୁ ଓ୍ୱାର୍ଡ ବୁଲି ଆସନ୍ତି ନାହିଁ । ସେଦିନ କିନ୍ତୁ ଭାଗ୍ୟକୁ ଜଣେ ରୋଗୀର ଅବସ୍ଥା ଖରାପ ଥିବାରୁ ସେ ତାକୁ ଦେଖିବାକୁ ଆସିଥିଲେ ।

ମୁଁ ତାଙ୍କୁ ଚନ୍ଦ୍ରଶେଖରବାବୁଙ୍କ କଥା ସବୁ କହିଲି ।

ଡାକ୍ତରବାବୁ କହିଲେ—ମୁଁ ମଧ୍ୟ ଏ ସବୁ ବିପଦ ବିଷୟରେ ଜାଣିଛି । ସେଥିପାଇଁ ମୋତେ ଅନେକ କଥାରେ ହୁସିଆର ରହିବାକୁ ପଡ଼ିବ । ଚୁମ୍ବକ ତ ପିଲାଟିର ଅବସ୍ଥାକୁ ଚାହିଁ ବ୍ୟବହାର କରାଯିବ । ତା ସଙ୍ଗେ ସଙ୍ଗେ ରଞ୍ଜନରଶ୍ମି ବା ଏକ୍‌ସରେ ସାହାଯ୍ୟରେ ଦେହ ଭିତର ଦେଖାଯିବ । ଚୁମ୍ବକ ବ୍ୟବହାର ଫଳରେ ଲୁହା ବଲ୍‌ଟିର ଗତି କିପରି ହେଉଛି ଦେଖିବାକୁ ହେବ । ହଠାତ୍ କେଉଁଠି ଅଟକି ଗଲେ ହୁଏତ ଅପରେସନ କରି ବଲ୍‌ଟିକୁ ବାହାର କରିବାକୁ ପଡ଼ିବ ।

ସୋମବାର ଦିନ ନଅଟାବେଳକୁ ଏଥିପାଇଁ ସମସ୍ତ ସ୍ଥିର କରାଗଲା । ବୈଦ୍ୟନାଥବାବୁଙ୍କୁ ଅନୁରୋଧ କଲା ତାଙ୍କ ସ୍କୁଟରରେ ଚନ୍ଦ୍ରଶେଖରବାବୁଙ୍କୁ ଡାକ୍ତରଖାନା ଆଣିବାକୁ । ସେ ମଧ୍ୟ ଆନନ୍ଦରେ ଏଥିରେ ରାଜି ହେଲେ ।

ସୋମବାର ଦିନ ନଅଟା ସମୟ । ମନରେ ମୋର ପ୍ରବଳ ଉତ୍କଣ୍ଠା ଓ ଆଶଙ୍କା । ପିଲାଟିର କଷ୍ଟ ସେତେବେଳକୁ ସୀମା ଟପିଲାଣି । ପାଞ୍ଚଛଅ ଦିନ ହେଲା ଖିଆପିଆ ନାହିଁ । ସେଥିରେ ପୁଣି ଅତିରିକ୍ତ ଯନ୍ତ୍ରଣା । କାନ୍ଦି କାନ୍ଦି ସେ ହାଲିଆ ହୋଇ ପଡ଼ିଲାଣି । ସମସ୍ତଙ୍କ ଆଖିରେ ଲୁହ ।

ରଞ୍ଜନରଶ୍ମି ଯନ୍ତ୍ର ପ୍ରସ୍ତୁତ । ଅପରେସନ ଯନ୍ତ୍ରପାତି ମଧ୍ୟ ଗରମ କରାଯାଇ ରଖାଗଲା । ଦରକାର ହେଲେ ବେହୋସ କରିବାକୁ ଡାକ୍ତର ମଧ୍ୟ ଆସିଲେ । ଚନ୍ଦ୍ରଶେଖରବାବୁ ତାଙ୍କର ଚୁମ୍ବକ ବାକ୍ସ ଆଣି ପହଞ୍ଚିଲେ । ସତେ ଅବା ତାହା ଏକ କୁହୁକ ପେଡ଼ି !



ପିଲାକୁ ସେଇ କୋଠରୀକୁ ଅଣାଗଲା । ତାର ବଳକୁ ଗୁହ୍ନି ଚୁମ୍ବକଟି ଠିକ୍ କରାଗଲା । ପିଲାଟିକୁ ତଳମୁହାଁ କରି ଝୁଲାଇ ଦିଆଗଲା । ଏଣେ ରଞ୍ଜନରଶ୍ମି ଯନ୍ତ୍ରରେ ପିଲା ଗୁଣ୍ଡରେ ଲୁହା ବଲ୍‌ଟିକୁ ଦେଖାଗଲା । ଚୁମ୍ବକଟି ଛୁଆଁଇ ଆସ୍ତେ ଆସ୍ତେ ବେକ ପାଖକୁ ଚଳାଇ ଅଣାଗଲା । ତା ସାଥିରେ ଲୁହା ବଲ୍‌ଟି ମଧ୍ୟ ଖସି ଖସି ପାଟି ବାଟେ ତଳକୁ ଠନ୍ କରି ଖସି ପଡ଼ିଲା ।

ସମସ୍ତେ ଆନନ୍ଦରେ କୁରୁଳି ଉଠିଲେ । ସଭିଁଙ୍କ ଆଖିରୁ ଆନନ୍ଦର ଲୁହ ଝରିଗଲା । ପିଲାଟି ମରଣ ମୁହଁରୁ ସତେ ଯେମିତି ଫେରିଆସିଲା ।



# ଗୋଟିଏ ଖୋଡ଼ା ହାତୀର କଥା




କୌଣସି ଗାଁରେ ବହୁତ ବଢ଼େଇ ରହୁଥିଲେ । ସେ ଗାଁ ପାଖରେ ଗୋଟିଏ ବଡ଼ ଜଙ୍ଗଲ ଥିଲା । ବଢ଼େଇମାନେ ସେ ଜଙ୍ଗଲରୁ କାଠ କାଟି ଆଣୁଥିଲେ । ତାପରେ ସେ କାଠରେ ବହୁ ପ୍ରକାର ପଦାର୍ଥ ତିଆରି କରି ବଜାରରେ ନେଇ ବିକୁଥିଲେ । ସେଥିରୁ ଯାହା ରୋଜଗାର କରୁଥିଲେ, ଖୁବ୍ ମଉଜ ମଜଲସ୍‌ରେ ଦିନ କାଟୁଥିଲେ ।

ଦିନକର କଥା । ବଢ଼େଇମାନେ ନିଜ ନିଜ କାମରେ ଲାଗିଥା'ନ୍ତି । ହଠାତ୍ ଗୋଟିଏ ହାତୀ ଆସି ସେଠାରେ ପହଞ୍ଚିଲା । ସେ ଯନ୍ତ୍ରଣାରେ ଅସ୍ଥିର ହେଲାପରି ଜଣାପଡୁଥାଏ । ତା ପାଦରେ ଗୋଟିଏ ମୁନିଆ କାଠଖଣ୍ଡ ପଶିଯାଇ ଘା' ହୋଇଯାଇଥିଲା । ତାହା ତାକୁ ଖୁବ୍ କଷ୍ଟ ଦେଉଥାଏ । ସେ ଖୋଟେଇ ଖୋଟେଇ ଆସି ବଢ଼େଇମାନଙ୍କ ପାଖରେ ପହଞ୍ଚିଲା । ତାପରେ ସେଠାରେ ବସିଗଲା । ଯେଉଁ ପାଦରେ ଘା' ହୋଇଥିଲା, ସେ ପାଦ ଆଗକୁ ବଢ଼ାଇଦେଲା ।

ହାତୀକୁ ଦେଖି ସମସ୍ତେ ଖୁବ୍ ଆଶ୍ଚର୍ଯ୍ୟ ହେଲେ । କିନ୍ତୁ ପରମୁହୂର୍ତ୍ତରେ ଡରିଯାଇ ଦଉଡ଼ିବାକୁ ଲାଗିଲେ । ଏହା ଦେଖି ହାତୀ ଉଠିଯାଇ ସେମାନଙ୍କର ବାଟ ଓଗାଳିଲା ! କିନ୍ତୁ କିଛି କଲା ନାହିଁ, କି କାହାର କୌଣସି ଅନିଷ୍ଟ କଲା ନାହିଁ । ତାପରେ ତାର ମୁଣ୍ଡକୁ ହଲାଇବାକୁ ଲାଗିଲା । ଏହା ଦେଖି ଜଣେ ବଢ଼େଇ ତାର ସାଥିମାନଙ୍କୁ କହିଲା—ଆମେ ଭୟ କରିବାର କୌଣସି କାରଣ ନାହିଁ । ତେଣୁ ପଳାଇଯିବାର ମଧ୍ୟ ଆବଶ୍ୟକ ନାହିଁ । ହାତୀ ଆମର କୌଣସି ଅନିଷ୍ଟ କରିବାପାଇଁ ଆସିନାହିଁ । ବୋଧହୁଏ କିଛି କହିବା ପାଇଁ ଆସିଛି ।

ତାପରେ ସମସ୍ତେ ଠିଆ ହୋଇଗଲେ । ହାତୀ ପୁଣି ଆସି ସେମାନଙ୍କ ଆଗରେ ବସିଲା । ଗୋଡ଼ ତାର ବଢ଼ାଇଦେଲା । ବଢ଼େଇମାନେ ଦେଖିଲେ ଯେ ହାତୀ ପାଦରେ ଗୋଟିଏ କାଠ ଖଣ୍ଡ ପଶିଯାଇଛି । ତେଣୁ ଘା ହୋଇ-ଯାଇଛି । ଗୋଟିଏ ବଢ଼େଇ ଧୀରେ ଧୀରେ ତା' ପାଦରୁ କାଠ ଖଣ୍ଡିକ ବାହାର କରି ଔଷଧ ଲଗାଇଦେଲେ । ହାତୀ ସେହି ସ୍ଥାନରେ ରହିଲା । କୁଆଡ଼େ ଗଲା ନାହିଁ । ବଢ଼େଇମାନେ ପ୍ରତିଦିନ ତା' କ୍ଷତ ସ୍ଥାନରେ ଔଷଧ ଲଗାଉଥାନ୍ତି । କେତେଦିନ ପରେ ହାତୀର ପାଦ ଭଲ ହୋଇଗଲା । ସେ ଆରାମରେ ଚାଲବୁଲ କରିପାରିଲା । ହେଲେ ହାତୀଟି ସେ ସ୍ଥାନ ଛାଡ଼ି ଆଉ କେଉଁଆଡ଼େ ଗଲାନାହିଁ । କାରଣ ସେ ବଢ଼େଇମାନଙ୍କ ସେବାରେ ଭଲ ହୋଇଗଲା ଏବଂ ସେମାନଙ୍କ ପ୍ରତି ତାର କୃତଜ୍ଞତା ଦେଖାଇବାକୁ ଚାହୁଁଥିଲା ।

ପ୍ରତିଦିନ ହାତୀ ଜଙ୍ଗଲକୁ ଯାଇ ବଡ଼ ବଡ଼ ଗଛସବୁ ଓପାଡ଼ି ଆଣି ବଢ଼େଇମାନଙ୍କ ପାଖରେ ପକାଏ । ବଢ଼େଇମାନେ ଖୁବ୍ ଖୁସି ହେଲେ । କାରଣ ସେମାନଙ୍କୁ ଆଉ ଗଛ କାଟିବା କଷ୍ଟ ଜଣା ପଡ଼ିଲାନାହିଁ । ହାତୀ କାଠ ଯୋଗାଇ ଦେଲା ନିୟମିତ ଭାବେ । ତା' ବଦଳରେ ବଢ଼େଇମାନେ ହାତୀକୁ ପ୍ରତିଦିନ ଖାଇବାକୁ ଦେଉଥାନ୍ତି ।

ଏମିତି କେତେ ବର୍ଷ ବିତିଗଲା । ଦିନେ ହାତୀ ଭାବିଲା, "ମୁଁ ତ ବୃଦ୍ଧ ଓ ଦୁର୍ବଳ ହୋଇଗଲିଣି; ତେଣୁ ବଢ଼େଇମାନଙ୍କର ସେବା କରିବା ପାଇଁ ମୋ ପୁଅକୁ ଆଣି କାମରେ ଲଗାଇବି ।"

ଏମିତି ଭାବି ଦିନେ ଜଙ୍ଗଲ ଭିତରକୁ ହାତୀ ଚାଲିଗଲା । ତା'ପର ଦିନ ପୁଅକୁ ନେଇ ଆସିଲା । ସେ ହାତୀଟି ଥିଲା ଧଳା ରଙ୍ଗର ଖୁବ୍ ସୁନ୍ଦର

ଦେଖିବାକୁ । ତାକୁ ଆଣି ବଢ଼େଇମାନଙ୍କ ଆଗରେ ଠିଆ କରିଦେଲା । ସତେ ଯେପରି ସେ କହୁଥିଲା—'ହେ ବଢ଼େଇମାନେ, ତୁମେମାନେ ମୋର ଜୀବନ ରକ୍ଷା କଲ । ତା ବଦଳରେ ମୁଁ ତୁମମାନଙ୍କୁ ମୋର ପୁଅକୁ ଦେଉଛି ତୁମ ସେବାରେ ।"

ତାପରେ ହାତୀ ତାର ପୁଅକୁ କହିଲା—"ପୁଅ, ଆଜିଠାରୁ ତୁମର କର୍ତ୍ତବ୍ୟ ହେଲା ତୁମେ ମୋ ପରି ନିଷ୍ଠା ଓ ଆନ୍ତରିକତାର ସହିତ ପରିଶ୍ରମ କରି ଏ ବଢ଼େଇମାନଙ୍କର ସେବା କରିବ ।"

ଏହା କହି ପୁଅକୁ ସେଠାରେ ଛାଡ଼ି ହାତୀ ଜଙ୍ଗଲ ଭିତରକୁ ଚାଲିଗଲା । ତା'ପର ଠାରୁ ହାତୀର ପୁଅ ବଢ଼େଇମାନଙ୍କର ସେବାରେ ନିଜକୁ ନିୟୋଜିତ କଲା । ଜଙ୍ଗଲରୁ ନିୟମିତ କାଠ ସବୁ ଆଣି ଦେଲା । ବଢ଼େଇମାନେ ତାର ଖାଦ୍ୟ ପାନୀୟ କଥା ବୁଝିଲେ ।

ଧଳା ହାତୀ ଖୁବ୍ କମ୍ ଦେଖାଯାନ୍ତି । ଏହି ହାତୀମାନେ ପୁଣି ଅତ୍ୟନ୍ତ ବଳବାନ ଏବଂ ଭାଗ୍ୟଶାଳୀ ହୁଅନ୍ତି । କେତେଦିନ ଏହିପରି ସେ ଧଳାହାତୀ ବଢ଼େଇମାନଙ୍କର କାମ କରିବାକୁ ଲାଗିଲା ।

ଧୀରେ ଧୀରେ ରାଜାଙ୍କ କାନରେ ପଡ଼ିଲା ସେ ସୁନ୍ଦର ଧଳା ହାତୀର କଥା । ରାଜା ତାକୁ ଦେଖିବା ପାଇଁ ଏବଂ ନିଜର କରିବା ଲାଗି ବ୍ୟାକୁଳ ହୋଇଉଠିଲେ । ସେ କୌଣସି ସମ୍ବାଦ ନ ଦେଇ ଦରବାରର କେତେକ ସଦସ୍ୟଙ୍କୁ ନେଇ ଆସି ସେ ଗାଁରେ ପହଞ୍ଚିଲେ । ରାଜାଙ୍କୁ ଦେଖି ଗାଁର ମୁଖିଆ କହିଲା, "ରାଜନ୍, ଯଦି ଆପଣଙ୍କର କାଠ କିମ୍ବା କାଠର କୌଣସି ଆସ୍‌ବାବ୍ ଆବଶ୍ୟକ ଥିଲା, ତେବେ ଆମ ପାଖକୁ ଖବର ପଠାଇ ପାରିଥାନ୍ତେ, ନିଜେ କଷ୍ଟ କରି କାହିଁକି ଏତେ ବାଟ ଆସିଲେ ? ଆମେ ତ ଖୁସି ହୋ'ଇ ଆପଣଙ୍କର କାମ କରିଦେଇଥାନ୍ତୁ କି ଆପଣଙ୍କର ପାଖରେ ଯାଇ ପହଞ୍ଚିଥାନ୍ତୁ ।"

ରାଜା ସେମାନଙ୍କ କଥା ଶୁଣି କହିଲେ—"ନା, ମୋର କାଠର ଦରକାର ନାହିଁ । ମୁଁ ଏ ଧଳାହାତୀଟିକୁ ନେବା ପାଇଁ ଆସିଛି । ଏହା ଦେଖିବାକୁ ଖୁବ୍ ସୁନ୍ଦର ଏବଂ ବଳବାନ୍ ମଧ୍ୟ । ତେଣୁ ସେ ମୋ ପାଖରେ ରହିଲେ ମୋର ଗୌରବ ବଢ଼ିବ ବୋଲି ବିଶ୍ୱାସ ।"

ବଢ଼େଇମାନେ ରାଜାଙ୍କ କଥା ଶୁଣି କହିଲେ, "ଏ ହାତୀ ଅବଶ୍ୟ ଆମର ବହୁତ ଉପକାର କରୁଛି । ଖୁବ୍ ଧୀରସ୍ଥିର ଅଟେ । ପରିଶ୍ରମୀ ମଧ୍ୟ । ହେଲେ ଯେତେବେଳେ ଆପଣ ଇଚ୍ଛା କରିଛନ୍ତି ଆପଣ ଏହାକୁ ନେଇ ଯାଇ-ପାରନ୍ତି ଆମର ଭକ୍ତି ଓ ପ୍ରେମର ଉପହାର ମନେକରି ।"

ହେଲେ ହାତୀ ରାଜାଙ୍କ ମାହୁନ୍ତ ସଙ୍ଗରେ ଯିବାପାଇଁ ଆଦୌ ରାଜି ହେଲା ନାହିଁ ।

ରାଜା ପଚାରିଲେ—"କଣ ଚାହୁଁଛି ଏ ହାତୀ ?"

ଜଣେ ବୁଢ଼ା ବଢ଼େଇ କହିଲା, "ରାଜନ୍, ବୋଧହୁଏ ଏ ଚାହୁଁଛି ତା ପାଇଁ ଯେତେ ଖର୍ଚ୍ଚ ହୋଇଛି ସବୁ ଦିଆଯିବା ଉଚିତ ।"

"ମୁଁ ପ୍ରସ୍ତୁତ ଅଛି ।" ଏହା କହି ରାଜା ସଙ୍ଗେ ସଙ୍ଗେ ବସ୍ତ୍ର, ଆଭୂଷଣ ତଥା ସୁନା ମୋହର କେତେ ବଢ଼େଇମାନଙ୍କୁ ଦେଲେ । ତାପରେ ହାତୀର ମୁଖରେ ସନ୍ତୋଷର ଆଭା ଖେଳିଗଲା । ସେ ଖୁସି ମନରେ ରାଜାଙ୍କ ସହିତ ଚାଲିଲା ।



ରଜଧାନୀରେ ପହଞ୍ଚିଲାପରେ ଏକ ଆଡ଼ମ୍ବରପୂର୍ଣ୍ଣ ଶୋଭାଯାତ୍ରା ବାହାରିଲା ସେ ଧଳା ହାତୀକୁ ନେଇ । ପ୍ରଜାମାନେ ଏପରି ସୁନ୍ଦର ହାତୀ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ ।

କେତେଦିନ ବିତିଗଲା । ରାଜା ହାତୀ ସଙ୍ଗେ ବନ୍ଧୁ ପରି ବ୍ୟବହାର କରିବାକୁ ଲାଗିଲେ । ସେ ତାଙ୍କର ପଡ଼ୋଶୀ ରାଜ୍ୟମାନଙ୍କ ଉପରେ ସହଜରେ ବିଜୟଲାଭ କଲେ ।

କିନ୍ତୁ ସବୁ ଦିନ ସମାନ ଯାଏନା । କାଳଚକ୍ରରେ ପଡ଼ି ଦିନେ ରାଜାଙ୍କର ମୃତ୍ୟୁ ହୋଇଗଲା । ତାପରେ ସମସ୍ୟା ହେଲା କିଏ ହେବ ତାଙ୍କର ଉତ୍ତରାଧିକାରୀ । ରାଜାଙ୍କର ପୁତ୍ର ସେତେବେଳକୁ ଅବୋଧ ଶିଶୁ ମାତ୍ର । ତେଣୁ ତାକୁ ସିଂହାସନରେ କିପରି ବସାଯାଇପାରିବ ?

ଏଣେ ରାଜାଙ୍କ ମୃତ୍ୟୁ ସମ୍ବାଦ ପାଇ ପଡ଼ୋଶୀ ରାଜାମାନେ ଆକ୍ରମଣ ଆରମ୍ଭ କରିଦେଲେ ।

ଶୋକାକୁଳ ହେଲେ ପ୍ରଜା । ରାଜ୍ୟରେ ହାହାକାର ଭରିଗଲା । ରାଣୀ କୌଣସି ଉପାୟ ନ ଦେଖି ଧଳା ହାତୀ ପାଖରେ ପ୍ରାର୍ଥନା କରିବାକୁ ଲାଗିଲେ ନଗର ତଥା ରାଜ୍ୟର ସୁରକ୍ଷା ପାଇଁ । ହାତୀ ପ୍ରୀତ ହୋଇ ସ୍ୱୀକୃତି ଦେଲା ତାର ମୁଣ୍ଡ ହଲାଇ ।

ତା ପରଦିନ ହାତୀ ଜଙ୍ଗଲକୁ ଗଲା । ସେଠାରୁ ହାତୀମାନଙ୍କର ଏକ ବିରାଟ ଦଳ ନେଇ ଆସିଲା ରାଜ୍ୟକୁ । ତାପରେ ସେମାନେ ଯାଇ ରଣଭୂମିରେ ପହଞ୍ଚିଲେ । ହାତୀମାନଙ୍କର ଏ ବିଶାଳ ସମାରୋହ ଦେଖି ଶତ୍ରୁମାନେ ଆତଙ୍କିତ ହୋଇପଡ଼ିଲେ । ସେମାନେ ଛତ୍ରଭଙ୍ଗ ଦେଇ ପଳାୟନ କରିବାକୁ ଲାଗିଲେ ।

କିନ୍ତୁ ପ୍ରାଣ ନେଇ ପଳାୟନ କରୁଥିବା ଆକ୍ରମଣକାରୀ ରାଜାଙ୍କୁ ଧଳା ହାତୀ ତା ମୁଣ୍ଡରେ ଉପରକୁ ଟେକି ଧରିଲା । ତାପରେ ଆଣି ରାଜଧାନୀରେ ପହଞ୍ଚି ରାଣୀଙ୍କ ସମ୍ମୁଖରେ ତାଙ୍କୁ ଠିଆ କରାଇଲା । ରାଜା ଲଜ୍ଜାରେ ମଥା ନତ କଲେ । କ୍ଷମା ମାଗି ରାଣୀଙ୍କ ନିକଟରେ ନିଜର

ପରାଜୟ ସ୍ୱୀକାର କଲେ । ଆଉ କେବେ ଆକ୍ରମଣ ନ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହେଲେ । ହାଣ୍ଡ ତେଣୁ ତାଙ୍କୁ ମୁକ୍ତ ଦେଲା ।

ରାଣୀ ଆନନ୍ଦରେ ଆତ୍ମହରା ହୋଇ ହାଣ୍ଡକୁ ଆଲିଙ୍ଗନ କରି ସ୍ନେହ କଲେ । ଏହିପରି ଧଳା ହାଣ୍ଡର ବୁଦ୍ଧି ଓ ବଳ ତଥା ପ୍ରଭୁଭକ୍ତି ସମସ୍ତଙ୍କୁ ମୁଗ୍ଧ କଲା । ସମସ୍ତେ ତାକୁ ପୂଜା କରିବାକୁ ଲାଗିଲେ ।




କାଉଛୁଆ ମନରେ ସେଦିନ ଭାରି ଦୁଃଖ । ଇସ୍କୁଲ ଫେରନ୍ତା ପିଲାମାନେ ବରଗଛରେ ଚଢ଼ି କୋରଡ଼ରୁ ଶୁଆ ଧରୁଥିଲେ । କାଉଛୁଆ ସେଇ ଡାଳରେ ବସିଥିଲା । ସେ ଦି' ଥର କା' କା' କରି ଡାକଦେଲା । ଫଳରେ ପିଲାମାନଙ୍କର ଶୁଆ ଧରିବା କାମଟା ଭଣ୍ଡୁର ହୋଇଗଲା । ଜଣେ ଦୁଷ୍ଟ ପିଲା ଥିଲା, ସେ ରାଗରେ କାଉକୁ ଗୋଟାଏ ଟେଲା ମାରିଦେଲା । ଟେଲାଟା କାଉ ଦେହରେ ବାଜି ତାର ଗୋଟିଏ ଡେଣା ଜଖମ ହୋଇଗଲା ।

କାଉ ଛୁଆ କାନ୍ଦି କାନ୍ଦି ଆସି ଏକଥା ତା ମାଆକୁ କହିଲା । କାଉ ମାଆ କହିଲା—"ପିଲାମାନେ ତ ଶୁଆ ଧରୁଥିଲେ, ତୁ କାହିଁକି ପାଟି କଲୁ ?"

କାଉ ଛୁଆ କହିଲା—"ମୁଁ ପରା ଗୀତ ଗାଉଥିଲି ।" ଏକଥା ଶୁଣି ତା ମାଆ ହସିଲା । କହିଲା—"ତୋର ଯେଉଁ କଣ୍ଠ, ସେଥିରେ ତୁ ଗୀତ ଗାଇବୁ ?"

କାଉଛୁଆ କନ୍ତୁ ଜିଦ୍ ଧରିଲା, ସେ ଗୀତ ଶିଖିବ । ପୁଅର ଜିଦ୍ ଦେଖି ମାଆ କହିଲା, "ଠିକ୍ ଅଛି । ଆମ୍ଭ ଗଛରେ କୋଇଲି ଅବଧାନ ଗୃହାଳ କରି ପିଲମାନଙ୍କୁ ଗୀତ ଶିଖାଉଛନ୍ତି, ତୁ କାଲି ସକାଳୁ ଯାଇ ତାଙ୍କର ଗୃହାଳରେ ନାଆଁ ଲେଖା । ତୋତେ ସେ ଗୀତ ଶିଖାଇଦେବେ ।"

କାଉ ଭରି ଖୁସି ହୋଇଗଲା । ସକାଳ ହେଲେ କେମିତି ଯାଇ ସେ ଆଗେ ଗୃହାଳରେ ନାଆଁ ଲେଖାଇବ, ରାତିସାରା ଖାଲି ସେଇ କଥା ଭାବିହେଲା ।

ତା ପରଦିନ ସକାଳୁ କାଉଛୁଆ ଯାଇ ଗୃହାଳରେ ହାଜର ହୋଇଗଲା । କୋଇଲି ଅବଧାନ ତାଙ୍କର ନାଲି ଚଶମାକୁ ନାକ ଉପରକୁ ଟାଣି ଆଣି କାଉକୁ ଟେରେଇ କରି ଗୃହିଁଲେ । ତାପରେ ପଗ୍ଭରିଲେ, "ହଇରେ ତୁ କୁଆଡ଼େ ଆସିଲୁ ?"

କାଉଛୁଆ କହିଲା, "ମାଆ ପଠାଇଛି ଗୀତ ଶିଖିବାକୁ ?" ଏକଥା ଶୁଣି ଗୃହାଳରେ ଯେତେ ପିଲା ଥିଲେ, ସମସ୍ତେ ହସିବାକୁ ଲାଗିଲେ । କାଉପିଲାଟା ବିଚରା ଭରି ଅପଦସ୍ଥ ହୋଇଗଲା । ଅବଧାନ କହିଲେ—"ଆରେ ତୁମ ଜାତିରେ ତ କେହି ଗୀତ ଗାଆନ୍ତି ନାହିଁ, ତୁ କଣ ଗୀତ ଶିଖିବୁ ? ତୁ ତ ଯାବତ ଅଳିଆ ଅସନା ଖାଇ ତଣ୍ଟିଟାକୁ ଖରାପ କରିସାରିଛୁ । ସ୍ୱର ଫିଟିବ କୁଆଡ଼ୁ ? ଆଚ୍ଛା କହିଲୁ—"କୁ-ଉ" କାଉ କହିଲା "କାଆ ।"

କୋଇଲି ଅବଧାନ କହିଲେ, "କା-ଆ ନୁହେଁ, "କୁ-ଉ" କହ ।" କାଉ ଯେତେ ଚେଷ୍ଟା କଲା, ତା ପାଟିରେ "କୁ" ଶବ୍ଦ ପଶିଲା ନାହିଁ । ଅବଧାନେ ବନାନ କରି କହିଲେ କହ—"କ"ରେ ହ୍ରସ୍ୱ ଉ କାର କୁ, ହ୍ରସ୍ୱ ଉ = କୁ-ଉ ।"

କାଉ କହିଲା—'କ'ରେ ହ୍ରସ୍ୱ ଉକାର ହ୍ରସ୍ୱ ଉ = କାଆ ।

ସମସ୍ତେ ଖୁବ୍ ଜୋର୍‌ରେ ହସିବାକୁ ଲାଗିଲେ । ଅବଧାନ ତାକୁ କହିଲେ—"ଯା-ଯା, ତୋ ଦ୍ୱାରା ଗୀତ ହୋଇପାରିବ ନାହିଁ ।" କାଉ ମନ ଦୁଃଖରେ ଫେରି ଆସି ମାଆକୁ ସବୁ କଥା କହିଲା । ମାଆ କହିଲା— "ହଉ, ଅବଧାନଙ୍କ ପାଖକୁ ଯିବା ଦରକାର ନାହିଁ । ଘରେ ବସି ସାରେଗାମାପାଧାନିସା ଅଭ୍ୟାସ କର ।

କାଉକୁ ତ ଭାରି ଅପମାନ ହୋଇ ଯାଉଥିଲା । ସେ ସ୍ଥିର କଲା, ଅବଧାନଙ୍କ ଚାହାଳକୁ ନ ଯାଇ ଘରେ ବସି ଗୀତ ଅଭ୍ୟାସ କରିବ ଏବଂ କୋଇଲିପିଲାକୁ ପରାସ୍ତ କରିବ । ସେଇଦିନଠାରୁ କାଉର ଖୁବ୍ ଝୁଙ୍କ୍ ହେଲା । ସେ ଅଲବତ୍ ଗୀତ ଶିଖିବ ଏବଂ ଲୋକେ ତାକୁ ଆଦର କରିବେ । କାଉ ଏଣିକି ସକାଳ ସଞ୍ଜ ଖରାବେଳ—ସବୁବେଳେ ଗୀତ ଅଭ୍ୟାସରେ ଲାଗିପଡ଼ିଲା । ସାରେଗାମା ପାଧାନିସା—କା-କା-କା-କା । ଏମିତି ପନ୍ଦର ଦିନ ପରେ କାଉ ମନେ ମନେ ଭାବିଲା, ଗୀତରେ ସେ ଗୋଟାଏ ଓସ୍ତାଦ୍ ହୋଇଗଲାଣି । ତାକୁ ଆଉ କେହି ହଟେଇ ପାରିବେ ନା । ତାପରେ ସେ ଗାଆଁ ମୁଣ୍ଡ ପଡ଼ିଆକୁ ଉଡ଼ିଗଲା । ସେଠାରେ ଗୋଟିଏ ଗାଈ ଚରୁଥିଲା । ଗାଈ ଶିଙ୍ଗ ଉପରେ ବସିଯାଇ ତା କାନ ପାଖରେ ଖୁବ୍ ଜୋର୍‌ରେ ଚିତ୍କାର କରି ଗୁଡ଼ାଏ କାଆ, କାଆ କଲା । ଗାଈ ବିରକ୍ତ ହୋଇ ତାକୁ ଶିଙ୍ଗରେ ଭୁଷି ଦେଲା ଓ ତାକୁ ମାରିବାକୁ ଗୋଡ଼ାଇଲା । କାଉ ସେଠାରୁ ଭୟରେ ଉଡ଼ିଗଲା । ଭାବିଲା ଗାଈଟା ତ ପଶୁଟାଏ । ସେ କଣ କେବେ ଗୀତ ଗାଏ ନା ଗୀତର ମୂଲ୍ୟ ବୁଝେ ? ମଣିଷ ସିନା ବୁଝିବ ଗୀତର ମୂଲ୍ୟ । ତେଣୁ ସେ ଗାଈକୁ ଛାଡ଼ି ଉଡ଼ିଗଲା ଗାଈଆଳ ପିଲା ପାଖକୁ ।

ଗାଈଆଳ ପିଲା ଗଛ ଛାଇରେ ବସି ବଇଁଶୀ ବଜାଉଥାଏ । କାଉ ଦେଖିଲା, ଏଇ ହେଉଛି ଅସଲ ମଉକା । ଗାଈଆଳ ପିଲାର ବଇଁଶୀ ସ୍ୱର ବେଶି ମିଠା ନା ତା ଗୀତର ସ୍ୱର ବେଶି ମିଠା । ସେ କଥା ଏଇଠାରେ ପରୀକ୍ଷା ହୋଇଯିବ । ସେ ତେଣୁ ଗାଈଆଳ ପିଲାର ମୁଣ୍ଡ ସିଧା ଗଛ ଡାଳରେ ବସି ଖୁବ୍ ଗୁଡ଼ାଏ କା-କା କଲା । ଗାଈଆଳ ପିଲା ସେ ଆଡ଼କୁ ମୋଟେ ଧ୍ୟାନ ନ ଦେଇ ବଇଁଶୀ ଫୁଙ୍କିବାରେ ଲାଗିଥାଏ । କାଉ ଏଥର ତଳକୁ ଓହ୍ଲାଇ ଆସି ଗାଈଆଳ ଆଗରେ ବସିଯାଇ ତା ବଇଁଶୀ ଆଡ଼କୁ ଚାହିଁ କା' କା' କଲା । ଗାଈଆଳ ପିଲା ବିରକ୍ତ ହୋଇ ତା ପାଞ୍ଚଣ ବାଡ଼ି ବାହାର କରି ତାକୁ ଶକ୍ତ ପାହାରେ ଦେଲା

କାଉ ମାଡ଼ ଖାଇ ଗାଈଆଳକୁ ମନେ ମନେ ଖୁବ୍‌ଗୁଡ଼ାଏ ଗାଳି ଦେଇ ଉଡ଼ିଗଲା । ସେ ଭାବିଲା ଗାଈଆଳଟା ମୂର୍ଖ । ସେ ଗୀତର ମୂଲ୍ୟ କିଛି ଜାଣିନାହିଁ । ସେ ଆଉ ଜଣେ କାହାକୁ ଏଥର ଗୀତ ଶୁଣାଇବ । ତାପରେ ସେ ଉଡ଼ିଗଲା ନଈକୂଳକୁ । ନଈ ଅଡ଼ଡ଼ରେ ବସି ଗଫୁର ମିଆଁ ବନ୍‌ଶୀ

ପକାଉଥିଲ । ସେ ଯାହା ମାଛ ଧରୁଥାଏ ତାକୁ ଗୋଟିଏ ଖାଳେଇରେ ରଖି ତା ମୁହଁରେ ସଢ଼େଇ ଘୋଡ଼େଇ ଦେଇଥାଏ । ବନଶୀ ଥୋପକୁ ଲକ୍ଷ୍ୟକରି ଏକା ଧ୍ୟାନରେ ବସିଥାଏ ।



କାଉ ଗାଈଆଳ ପିଲାଠାରୁ ମାଡ଼ ଖାଇ ଟିକିଏ ତରଛୁ ଯାଇ ଗଫୁର ପାଖକୁ ନ ଯାଇ ଏଥର ଆଗେ ତା ମୁଣ୍ଡ ଉପରପାଖରେ ଚକର ଦେଇ ଉଡ଼ ଉଡ଼ ଗୁଡ଼ାଏ କା କା କଲା । ଗଫୁର ଭାବିଲା—ଏ ଅମଙ୍ଗଳିଆ କାଉଟା ବୋଧହୁଏ ତା ମାଛ ଖାଳେଇ ଉପରେ ଲୋଭ କରି ଆସି ଚକର ଦେଲାଣି । ସେ ତେଣୁ ମାଛ ଖାଳେଇଟାକୁ ପାଖକୁ ଟାଣି ନେଇ ସାବଧାନ ହୋଇଗଲା ଓ କାଉକୁ କେମିତି ପାହାରେ ଦେବ ସେଇ ସୁଯୋଗରେ ରହିଲା । କାଉ ଦୁ' ଥର ଫେରି ଚକର ଦେଇ ଏଥର ଆସି ଯେମିତି ଗଫୁର ଆଗରେ ବସିଯାଇଛି, ଗଫୁର ତା ବନ୍‌ଶୀ ବାଡ଼ରେ କାଉକୁ ନିର୍ଘାତ ପାହାରେ ଦେଲା ।

କାଉ ଛଟପଟ ହୋଇ ମଲି ମଲି ଡାକି ସେଠାରୁ ଉଡ଼ି ଚାଲିଗଲା । ତା ଜୀବନଟା ସେଦିନ ରହିଗଲା । ଲଗ ଲଗ ତିନିଥର ମାଡ଼ ଖାଇ ଏବଂ

କୋଇଲି ଅବଧାନଙ୍କ ଚଟଶାଳୀରୁ ଅପମାନ ପାଇ ଗୀତ ଝୁଙ୍କ୍ ତାର ଏକବାରକେ ଛାଡ଼ିଗଲା । ସେ ଭାବିଲା,—ନା, ଏ କାମ ଆଉ ହେବ ନାହିଁ । ଇସ୍କୁଲ ପିଲା ସେଦିନ ଶୁଆ ଧରୁଥିଲେ । ଶୁଆକୁ ଲୋକମାନେ ପଞ୍ଜୁରୀରେ ରଖି ବୁଟ, ପାଚିଲା କଦଳୀ ଇତ୍ୟାଦି ବଢ଼ିଆ ବଢ଼ିଆ ଖାନା ଖାଇବାକୁ ଦିଅନ୍ତି । ସେ ଯଦି କୌଣସି ପ୍ରକାରେ ଗୋଟିଏ ପଞ୍ଜୁରୀ ଭିତରେ ପଶି-ପାରନ୍ତା, ତେବେ ସେଇଠି ଆରାମରେ ରହିଯାଆନ୍ତା । ଏଣେତେଣେ ବୁଲି ଅଳିଆ ଅସନା ଖାଇ ତଣ୍ଟି ଖରାପ ହୁଅନ୍ତା ନାହିଁ । ତା ହେଲେ ସେ କୋଇଲି ଭଳି ମିଠା ସ୍ୱରରେ ଗୀତ ଗାଇପାରନ୍ତା ।

କାଉ ଏମିତି ବୁଲୁ ବୁଲୁ ଦିନେ ଦେଖିଲା, ପଧାନ ଘର ଅଗଣାରେ ଗୋଟିଏ ଖାଲି ପଞ୍ଜୁରୀ ଥୁଆ ହୋଇଛି । କାଉ ଆଉ ଡେରି ନ କରି ତଳକୁ ଓହ୍ଲାଇ ଯାଇ ପଞ୍ଜୁରୀର ଦୁଆରକୁ ଥଣ୍ଟରେ ଖୋଲିଦେଲା ଓ ତା ଭିତରେ ପଶିଗଲା । ତା ପରେ ଆରମ୍ଭ କରିଦେଲା କା-ଆ, କା-ଆ, କା-ଆ ।

ପଧାନ ଘର ପିଲାମାନେ ଧାଇଁ ଆସିଲେ । ସେମାନେ ପାଟିକଲେ— "ଆରେ ଭାଇ ଦେଖରେ, ପଞ୍ଜୁରୀ ଭିତରେ ଗୋଟାଏ କାଉ ପଶିଛି !" ସେମାନେ ପଞ୍ଜୁରୀର ମୁହଁ ବନ୍ଦ କରିଦେଲେ । କିଏ କହିଲା—"ରହ, ତା ଦେହରେ ଚୂଆ ଲଗାଇବା ।" କିଏ କହିଲା, "ତା ଗୋଡ଼ରେ ଦଉଡ଼ି ବାନ୍ଧି ତାକୁ ଘୋଷାଡ଼ିବା ।" ଆଉ କିଏ କହିଲା, "ସେଦିନ ଆମ ଭାତ ଥାଳିରେ ଥଣ୍ଟ ମାରିଦେଇଥିଲା । ତା ଥଣ୍ଟକୁ ଛେଚି ଦେବା ।" ଶେଷରେ ପିଲାମାନେ ପଞ୍ଜୁରୀ ସହିତ କାଉକୁ ନେଇ ବାଡ଼ି ପୋଖରୀରେ ଦି' ତିନିଥର ବୁଡ଼ାଇଲେ ।

କାଉ ଅଣନିଃଶ୍ୱାସୀ ହୋଇ ଠାକୁରଙ୍କୁ ଡାକିଲା—"ଠାକୁରେ, ମୋତେ ଦୁଷ୍ଟ ପିଲାମାନଙ୍କ ଦାଉରୁ ଆଜି ରକ୍ଷାକର ।" ଯାହା ହେଉ ପିଲାମାନେ କାଉଟାକୁ ଜୀବନରେ ନ ମାରି ଉଡ଼ାଇଦେଲେ । କାଉ ଜୀବନ ନେଇ ଉଡ଼ିଉଡ଼ି ଏଥର ବଣକୁ ଚାଲିଗଲା । ମନଦୁଃଖରେ ଗୋଟିଏ ଗଛ ଡାଳରେ ବସି ଡେଣା ଶୁଖାଉଛି; ଏତିକିବେଳେ ଦେଖିଲା, ସ୍ୱର୍ଗର ଜଣେ ଦେବଦୂତ ସେଇବାଟେ ଯାଉଛନ୍ତି । କାଉ ତାଙ୍କ ଗୋଡ଼ ତଳେ ପଡ଼ି ନିଜର ସବୁ ଦୁଃଖ କହିଲା—ଲୋକମାନେ ତାକୁ ସବୁବେଳେ ଦୂର ଦୂର କରୁଛନ୍ତି । ଦେଖିଲେ ଘୃଣା କରୁଛନ୍ତି, ଏହାର କାରଣ କ'ଣ ବୋଲି ପଚାରିଲା ।

ଦେବଦୂତ କହିଲେ, "ତୋର ରୂପ ଅସୁନ୍ଦର, ତା ସାଙ୍ଗକୁ ତୋର ଗୁଣ ମଧ୍ୟ ଖରାପ । ଲୋକେ ତୋତେ ଭଲ ପାଇବେ କେମିତି ? ଆଚ୍ଛା, ସେଦିନ ତୁ ରାଜୁତ ଘର ହାଡ଼ା ବଳଦ ପିଠିରେ ବସି ତାକୁ ଖୁମ୍ପୁ ଥିଲୁ। ଆଜି ସେ ଘର ଛଟପଟ ହେଉଥିଲା ।" କାଉ କହିଲା, "ହଁ" । ଦେବଦୂତ କହିଲେ, "ଏହା ଭଲ କାମ ନୁହେଁ । ଆଚ୍ଛା, ତୁ ସେଦିନ ପ୍ରଧାନ ଘର ପିଲାଙ୍କର ଭାତ ଥାଳରେ ଅଣ୍ଡମାରି ଦେଇଥିଲୁ ।" କାଉ କହିଲା, "ହଁ" । ଦେବଦୂତ କହିଲେ, "ଏହା ଭଲ କାମ ନୁହେଁ । ଅଚ୍ଛା, ତୁ ସେଦିନ ଗୋଟାଏ ମଲା ଏଣ୍ଡୁଅ ଆଣି ଠାକୁର ଅଗଣାରେ ଥିବା କୂଅରେ ପକାଇଥିଲୁ ।" କାଉ କହିଲା, "ହଁ" । ଦେବଦୂତ କହିଲେ, "ଏହା ଭଲ କାମ ନୁହେଁ । ତୁ ଖଣ୍ଡଙ୍କ ଭଲ ଚୋରି କରି ଖାଉଛୁ । ଯେଉଁଠି ବସୁଛୁ ସେଇଠାରେ ମଳତ୍ୟାଗ କରୁଛୁ। ଲୋକେ ତୋତେ ଆଦର କରିବେ କେମିତି ? ଆଚ୍ଛା ହେଉ । ଆଜିଠାରୁ ଏଇ ତିନୋଟି ଭଲ କାମ ତୁ କର । ଲୋକମାନେ ତୋତେ ନିଶ୍ଚେ ଆଦର କରିବେ । ପ୍ରଥମ କଥା ହେଲା—ତୁ ଅଳସୁଆ ନ ହୋଇ ପ୍ରତିଦିନ ଖୁବ୍ ଭୋର୍‌ରୁ ଉଠି ଲୋକମାନଙ୍କ ଘର ଅଗଣାରେ ଯାଇ କା-କା ରଡ଼ିବୁ ।



ଲୋକମାନ ନିଦରୁ ଉଠିପଡ଼ିବେ ଏବଂ ତୋତେ କହିବେ ଶୁଭ କାଉ । ଦୁଇରେ, ତୁ ଯେତେବେଳେ ଖାଇବା ଜିନିଷ ପାଇବୁ, ତାକୁ ଏକା ନ ଖାଇ କା-କା ଡାକି ତୋର ଜାତି ଭାଇ ସମସ୍ତଙ୍କୁ ଜଣାଇଦେବୁ ଏବଂ ମିଳିମିଶି ସମସ୍ତେ ତାକୁ ବାଣ୍ଟି କରି ଖାଇବ । ଶେଷ କଥାଟି ହେଉଛି—ତୁମ ଭିତରୁ

କେହି ଜଣକ ଉପରେ ବିପଦ ପଡ଼ିଲେ ଯିଏ ଯେଉଁଠି ଥିବ ସମସ୍ତେ ଉଡାଉଡ଼ି ହୋଇ ଆସି ଏକାଠି ହୋଇଯିବ ଏବଂ ଶତ୍ରୁର ମୁକାବିଲା କରିବାକୁ ଚେଷ୍ଟା କରିବ ।"

କାଉ ଏଥିରେ ରାଜି ହୋଇ ଚାଲିଗଲା ଏବଂ ଦେବଦୂତଙ୍କ କଥା ତାର ଜାତିଭାଇ ସମସ୍ତଙ୍କୁ ଜଣାଇଦେଲା । ସେଇଦିନଠାରୁ କାଉ ଖୁବ୍ ସକାଳୁ ଉଠି କା-କା ଡାକ ଆମ ନିଦ ଭାଙ୍ଗିଦେଉଛି । କୌଣସି ଜାଗାରେ ଖାଦ୍ୟ ପଡ଼ିଥିବାର ଦେଖିଲେ ସେ ଏକା ନ ଖାଇ ତାର ଜାତି ଭାଇ ସମସ୍ତଙ୍କୁ ଡାକି ଖାଉଛି ଏବଂ ଜଣଙ୍କ ଉପରେ ବିପଦ ପଡ଼ିଲେ ଶହ ଶହ ସଂଖ୍ୟାରେ ଏକାଠି ହୋଇ କା-କା ଚିତ୍କାର କରୁଛନ୍ତି । କାଉ ମିଠା ସ୍ୱରରେ ଗୀତ ନ ଗାଇଲେ କଅଣ ହେବ, ତାର ଏ ତିନୋଟି ଭଲ ଗୁଣ ଅଛି ।

# ନଣ୍ଡା ମଉସାଙ୍କ ପଣ୍ଡା

ନନ୍ଦକିଶୋର ସିଂହ



ନଣ୍ଡାମଉସାଙ୍କ ପଣ୍ଡାକୁ ଗାଆଁର ସବୁ ଲୋକ ଆଦର କରନ୍ତି । ପଣ୍ଡାଟି ଭାରି କାମିକା । ହଳ କରିବାରେ, ଗାଡ଼ି ଟାଣିବାରେ ପଣ୍ଡା ହଟିବାର ନୁହେଁ । ନଣ୍ଡାମଉସା ପଣ୍ଡାକୁ ନିଜ ପୁଅଠୁଁ ବଳି ଆଦର କରନ୍ତି । ପଣ୍ଡା ବି ନଣ୍ଡାମଉସାଙ୍କ ପୋଷଣାହାରି ପୁଅପରି ।

ନଣ୍ଡାମଉସା ପଣ୍ଡାକୁ କୁଣ୍ଡାପାଣି ଯାହା ଦିଅନ୍ତି ପଣ୍ଡା ଖାଇ ସନ୍ତୁଷ୍ଟ ରହେ । ନଣ୍ଡାମଉସା ତା ଦେହରେ ଗୋବର କି ଧୂଳିଟିକିଏ ଲାଗିଥିଲେ ନିଜେ ହାତରେ ଝାଡ଼ିଦିଅନ୍ତି ।

ଦିନ ପରେ ଦିନ ଗଡ଼ି ଚାଲିଲା । ପଣ୍ଡା ବୁଢ଼ା ହେଲା । ବଳ ବୟସ ହଟିଲା । ଆଉ କାମକୁ ସେତେ ପାରିଲା ନାହିଁ । ହଳ କରୁ କରୁ ବିଲ ମଝିରେ ଅଟକି ଠିଆ ହେଲା । ଗାଡ଼ି ଟାଣୁ ଟାଣୁ ଝୁଣ୍ଟି ପଡ଼ିଲା । ଏଥିରେ ନଣ୍ଡାମଉସା ଭାରି ବିରକ୍ତ ହେଲେ । ପଣ୍ଡାକୁ ଆଗ ଭଳି ଆଦର କଲେ ନାହିଁ । ଖାଇବାକୁ କୁଣ୍ଡାତୋରାଣି ମୁନ୍ଦେ ବି ଦେଲେ ନାହିଁ ।

ଶେଷରେ ନଣ୍ଡାମଉସା ପଣ୍ଡାକୁ ଅନ୍ୟଜଣକୁ ବିକିଦେବାକୁ ଠିକ୍ କଲେ । ସେଦିନ ପଣ୍ଡାକୁ ଦେଖିଲେ ଜଣାଯାଉଥାଏ ସତେ ଯେପରି ପଣ୍ଡା କାନ୍ଦୁଛି ! ତା' ଆଖିରୁ ଧାର ଧାର ଲୁହ ଝରୁଛି । ହାୟ, ନଣ୍ଡାମଉସା ଏଡ଼େ ନିର୍ଦ୍ଦୟ !

ଦିନେ ରାତିରେ ନଣ୍ଡାମଉସାଙ୍କ ନିଦ ଘୁଇଁକନା ଭାଙ୍ଗିଗଲା । ମଉସା ଉଠି ପଡ଼ିଲେ । ବାଘୁଆ ନଣ୍ଡାମଉସାଙ୍କ ପୋଷା କୁକୁର । ସେ ଖୁବ୍ ଜୋରରେ ଭୁକୁଥାଏ । ଗୁହାଳ ଦରଜା ଆଡ଼ରେ ଘର୍ ଘର୍ ଶବ୍ଦ ହେଉଥାଏ ! ନଣ୍ଡାମଉସା ଗୁହାଳ ଦରଜା ପାଖକୁ ଯାଇ ଦେଖନ୍ତି ତ ପଣ୍ଡାଟା ଆସି



ଗୁହାଳର ଟିଣ କବାଟରେ ମୁଣ୍ଡିଆ ମାରୁଛି । ନଣ୍ଡାମଉସା ପଣ୍ଡାକୁ ବହେ ପିଟିଲେ । ପୁଣି ଗୁହାଳ ଦରଜା ବନ୍ଦକରି ଦେଇ ଚାଲିଆସିଲେ ଶୋଇବାକୁ ।

ସକାଳ ହେଲା । ନଣ୍ଡାମଉସା ଦେଖିଲେ ବେଳକୁ ତାଙ୍କ ଶୋଇବା ଘର କାନ୍ଥରେ ଅଧା ସିନ୍ଧଗାତ ହୋଇଛି । ନଣ୍ଡାମଉସା ଘଡ଼କରେ ସବୁ ବୁଝିପାରିଲେ । ପଣ୍ଡା ଗୁହାଳ ଦରଜାକୁ ମୁଣ୍ଡିଆ ମାରିବାରୁ ବାଘୁଆ ଖୁବ୍ ଜୋରରେ ଭୁକୁଛି । ବାଘୁଆ ଭୁକିବାରୁ ଚୋରମାନେ ସିନ୍ଧଗାତ ଅଧା କରି ପଳାଇ ଯାଇଛନ୍ତି । ଗୁହାଳ ଦରଜା ଖୋଲିବାରୁ ନଣ୍ଡାମଉସା ଦେଖନ୍ତି ପଣ୍ଡା କୁଆଡ଼େ ନ ଯାଇ ସେଇ ଗୁହାଳ ପିଣ୍ଡା ଉଳ ତଳେ ଶୋଇଛି । ନଣ୍ଡାମଉସା ନିଜ ଭୁଲ ବୁଝିପାରିଲେ । କଂସେଇ ଆସିବାରୁ ପଣ୍ଡାକୁ ଆଉ ନ ବିକି ନିଜ ପାଖରେ ପୁଣି ଆଗଭଳି ଯତ୍ନରେ ରଖିଲେ ।

ଉପକାରୀ ଜୀବ ବୁଢ଼ା ହେଲେ ବି ତାକୁ ଅନାଦର କରିବା ଠିକ୍ ନୁହେଁ ।

# ନଧିଅଜାଙ୍କ ମଜା ପ୍ରସ୍ତାବ

ଚକ୍ରଧର ବେହେରା



ନଧିଅଜା, କଳା ହୋଇ ଡେଙ୍ଗା ବୁଢ଼ାଟିଏ । କପାଳ ଉପରଟା ପୂରା ଚନ୍ଦା । ଅନ୍ତଲପେଟଟି ଦୂରକୁ ଧାନଉଷୁଆଁ ହାଣ୍ଡିଟାଏ ପରି ଦିଶେ । ହାତରେ ବଙ୍କୁଲବାଡ଼ି । ଠୁକ୍ ଠୁକ୍ ଆବାଜରୁ ବାରି ହୋଇପଡ଼େ ନଧିଅଜା କେଉଁଠିକି ଧପାଳି ଚାଲିଛନ୍ତି । କାନ୍ଧରେ ସାତସିଆଁ ପାଚିଲା ଗାମୁଛାଟାଏ ଏବଂ କାଖତଳୁ ବଟୁଆଟି କେବେ ହେଲେ ଛାଡ଼ି ଯାଏନା । ପାକୁଆ ପାଟିଟା ଗୋଟାଏ ମେସିନ୍ ପରି ଅନବରତ ପାନ ଚୋବାଇବାରେ ଲାଗିଥାଏ । ବୟସ ଆଗେଇ ଯାଇଥିଲେ ବି ଶାଳଗଛ ପରି ବେଶ୍ ସିଧା ହୋଇ ଚାଲନ୍ତି ସେ ।

ରବିବାର ହେଲେ ନଧି ଅଜାଙ୍କ ଘରେ ଗୋଟାଏ 'ଶିଶୁ ସଂସାର' ବସେ । ଅଜା ଆଉ ଦୁହେଁ ପିଲାଙ୍କ ସାଥିରେ ପିଲା ହୋଇ ଯାଆନ୍ତି; ସେ ସେମାନଙ୍କ ସହିତ ହସନ୍ତି, ଖେଳନ୍ତି, ଗପକରନ୍ତି, ଥଟ୍ଟାପରିହାସ ହୁଅନ୍ତି ।

ସେମାନଙ୍କର କଥା କାହାଣୀ, ଠଗ ଠମାଳି ଆକାଶବାଣୀରୁ ପ୍ରସାରିତ 'ଶିଶୁ ସଂସାର' ବା 'ଚକା ଚକା ଭଉଁରି'କୁ ବି ବଳିଯାଏ ।

ନିଧିଅଜା ବଡ଼ ପାଠୁଆ ନୁହେଁ; ହେଲେ ରାମାୟଣ, ମହାଭାରତ-ଠାରୁ ଆରମ୍ଭ କରି ଇତିହାସର ଅନେକ ପ୍ରସିଦ୍ଧ ଘଟଣା ତାଙ୍କ ତୁଣ୍ଡରେ ଲେଖାହେଲା ପରି ଥାଏ । କଥାଗୁଡ଼ିକୁ ନିଜ ଅନୁଭୂତିରୁ ଆରମ୍ଭ କରି ସେ ଏମିତି ଭାବରେ ବନେଇ ଚୂନେଇ କହନ୍ତି ଯେ, ମନେହୁଏ, ଯେମିତି ଜଣେ ଅଭିଜ୍ଞ ଶିକ୍ଷକ ତାଙ୍କ ଶ୍ରେଣୀଗୃହରେ ପିଲାମାନଙ୍କୁ ପାଠ ପଢ଼ାଉଛନ୍ତି । ଅଳସୁଆ ଓ ଭୟାଳୁ ପିଲାଙ୍କୁ ସେ ଆଦୌ ପସନ୍ଦ କରନ୍ତି ନାହିଁ । କୌଣସିନା କୌଣସି ବୀରଙ୍କ ଜୀବନୀରୁ କିଛି ଗୋଟାଏ ଘଟଣା ପିଲାଙ୍କୁ କହିସାରିଲା ପରେ ସେ ତିଆରନ୍ତି, "ଦେଖ ପିଲାଏ, ନିଜକୁ ଏମିତି ଗୋଟାଏ ଗୋଟାଏ ବୀରଭାବେ ଗଢ଼ି ତୋଳିବ ତ ମୋ ପାଖକୁ ଆସ, ତା' ନ ହେଲେ ଘରେ ବସ ।"

ପିଲାମାନେ ଏକଥା ଶୁଣି ସମସ୍ୱରରେ କହିଉଠନ୍ତି, "ନାଇଁ ଅଜା, ଆମେ ସବୁ ବୀର ହେବୁ, ଅସହାୟ ମଣିଷର ସେବା କରିବୁ, ଅନ୍ୟାୟ ଓ ଅନୀତି ବିରୁଦ୍ଧରେ ଲଢ଼ିବୁ ।"

ପହରିକିଆ ଶିଆଳି ଭୁକି ଉଠନ୍ତି··· । ଆଈ ଘର ଭିତରକୁ ଧାଇଁ ଯାଇ ବେତ ବୋଝଟିଏ ଟେକିଆଣେ । ପିଲାଙ୍କ ହାତରେ କେଉଁଥର କଦଳୀ, କେଉଁଥର ମକା, କେଉଁଥର କାକୁଡ଼ି ଅବା କେଉଁଥର ପାଚିଲା ଅମୃତଭଣ୍ଡାରୁ ଚେନାଏ ଲେଖାଏଁ ଧରାଇଦିଏ; ଆଉ ଅଜା ସେତିକିବେଳେ କାହାର ପିଠି ଥାପୁଡ଼େଇ, କାହାର ମୁଣ୍ଡ ଆଉଁସି ଦେଇ କହନ୍ତି, "ଯାଅ, ପାଠପଢ଼ା ବେଳ ହେଲା, ମନଦେଇ ପାଠ ପଢ଼ିବ, ଭଲ ମଣିଷ ହେବ ।"

ପିଲାମାନେ କୋଳାହଳ କରି, ଅଜା ଆଈଙ୍କର ପ୍ରଶଂସା ଗାଇ ଗାଇ ଯେଝା ଘରକୁ ଫେରିଯାଆନ୍ତି । ମନେ ମନେ ହିସାବ କରନ୍ତି ପୁଣି କେବେ ରବିବାର ହେବ ।

ଗାଁ ଗୋଟାକର ଛୁଆ ଅଜା ଆଈଙ୍କର, ଆଉ ସବୁ ଲୋକେ ବି ତାଙ୍କ ନିଜର ପରି । ସେଇଥିପାଇଁ ଛୁଆଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ଖୁବ୍ ମାନନ୍ତି । କେହି ତାଙ୍କ କଥାକୁ କେବେହେଲେ ତଳେ ପକାନ୍ତି ନାହିଁ । ଗାଁର ଭଲମନ୍ଦ, ହାନିଲାଭ ସବୁ କଥାରେ ତାଙ୍କୁ ଆଗ ଡାକରା ପଡ଼େ । ପାକୁଆ

ପାଟିର ଦେନାଏ ହସ ଆଉ ଉଜ୍ଜ୍ୱଳ ତାରକା ପରି ଦିଶୁଥିବା ଆଖି ଦ'ଟାର ଶାନ୍ତ ସରଳ ଚାହାଣି ଆଗରେ ଶତ୍ରୁ ବି ମିତ୍ର ହୋଇଯାଏ । ଏଥିପାଇଁ ଆଉପାଖ ଚଉଶଖଣ୍ଡ ମୌଜାରେ ନନ୍ଦିଅଜାଙ୍କର ଭାରି ନାଁ ଡାକ । ମଣିଷ ଭିତରେ ମଣିଷଟାଏ ଏକା । ସବୁଠି ସେହି ଗୋଟିଏ ନାଁରେ ସେ ପରିଚିତ— "ନନ୍ଦିଅଜା" ।

ଦିନକର ଘଟଣା । ସେଦିନ ରବିବାର । ଦିନ ଦ୍ୱିପ୍ରହର । ଗୁଡ଼ାଏ ପିଲାଙ୍କୁ ସାଥିରେ ଧରି ଅଜା ଆଈ ଦୁଇଜଣ ଆଶ୍ରମ ପରି ଦିଶୁଥିବା ତାଙ୍କର ସେହି ବଗିଚା ଭିତରେ କାହାଣୀ ମେଳିଥାନ୍ତି । କେତେକ କୁନି କୁନି ପିଲା କଙ୍କି ଧରିବାପାଇଁ ବଗିଚାରେ ଏଣେତେଣେ ଧାଉଁଥାଆନ୍ତି । ଠିକ୍ ଏତିକବେଳେ ଦୁଇଜଣ କଲେଜପାଠ ଶେଷ କରିଥିବା ଯୁବକ ଆସି ସେଠାରେ ପହଞ୍ଚିଲେ । ଅଜା ଆଈ ତାଙ୍କୁ ଦେଖି ଆଦରରେ ପାଖରେ ବସାଇଲେ ଏବଂ ଆସିବାର କାରଣ ପଚାରିଲେ ।

ଯୁବକ ଜଣେ ଉତ୍ତର ଦେଲା—"ଅଜା, ଜଣେ ଗୁରୁଭାଇ ଆଜି ଆମ ଗାଁକୁ ଆସିଛନ୍ତି । ସେ ଧର୍ମ ଓ ଠାକୁର ଅନୁକୂଳଚନ୍ଦ୍ରଙ୍କ ଦର୍ଶନ ଉପରେ ପ୍ରବଚନ ଦେବେ । ତୁମକୁ ଆମନ୍ତ୍ରଣ ରହିଲା, ତୁମେ ସେ ସଭାକୁ ସଞ୍ଜବେଳେ ଟିକେ ଯିବ । ଠାକୁରାଣୀପଦାରେ ସଭା ବସିବ ।"

ନନ୍ଦିଅଜା ହସି ହସି କହିଲେ, "ଠିକ୍ ଅଛି, ମୁଁ ଯିବି ।"

ଯୁବକ ଦ'ଜଣ ଗାଁର ଅନ୍ୟମାନଙ୍କୁ ଏ ଖବର ଜଣାଇବା ପାଇଁ ଚାଲିଗଲେ । ନନ୍ଦିଅଜା ଅଧା ରଖିଥିବା କାହାଣୀଟିକୁ ଶୁଣାଇ ସାରି ପିଲାମାନଙ୍କୁ ସେଦିନ ବିଦାୟ ଦେଲେ ।

× × × ×

ସଞ୍ଜବେଳେ ଭଜନ କୀର୍ତ୍ତନ ଧ୍ୱନିରେ ଠାକୁରାଣୀପଦା ଉଚ୍ଛୁଳି ପଡ଼ିବା ଶୁଣି ନନ୍ଦିଅଜା ବାଡ଼ିଖଣ୍ଡିକ ଧରି ଉଠିଲେ । ଆଈଙ୍କୁ ସାଙ୍ଗରେ ନେଲେ । ସଭାସ୍ଥଳୀକୁ ଯାଇ ଗୋଟିଏ କୋଣରେ ଚୁପ୍‌ଚାପ୍ ବସି ଧର୍ମ ପ୍ରବଚନ ଶୁଣିଲେ ।

ପ୍ରବଚନ ଶେଷରେ କଥା ପଡ଼ିଲା—ମହାପ୍ରଭୁ ଠାକୁରଦା'ଙ୍କ ଧର୍ମ-ଦୀକ୍ଷା କେଉଁ କେଉଁମାନେ ଗ୍ରହଣ କରିବେ ଓ ସ୍ଥାୟୀ ଭଜନ ଗୃହଟିଏ କେଉଁଠି ହେବ ।

ଉପସ୍ଥିତ ଗ୍ରାମବାସୀଙ୍କ ମଧ୍ୟରୁ ଅଧିକାଂଶ ପ୍ରସ୍ତାବଦେଲେ ନଧିଆଜା ତାଙ୍କ ବାଡ଼ରୁ କିଛି ଜମି ଦାନ କରନ୍ତୁ ଏକ ଭଜନ ଘର ପାଇଁ ।



ଏକଥା ଶୁଣି ନଧିଆଜା ଠିଆହେଲେ । ସେ ଠିଆହେବାମାତ୍ରେ ଲୋକଙ୍କ କରତାଳ ଧ୍ୱନିରେ ସଭାସ୍ଥାନ ଉଚ୍ଛୁଳି ଉଠିଲା । ହେଲେ ନଧିଆଜା ଏଥିରେ ଟିକିଏ ବି ଖୁସି ନ ହୋଇ ଗମ୍ଭୀର କଣ୍ଠରେ କହିଲେ, "ଦେଖ ଭାଇମାନେ, ଆପଣମାନେ ଯେଉଁ ପ୍ରସ୍ତାବ ଉଠାଇଲେ ସେଥିରେ ମୁଁ ଆଦୌ ଏକମତ ନୁହେଁ । ଭଜନ ଘର ପାଇଁ ମୋର ପନ୍ଦର ଏକର ଜମିରୁ ପାଦେ ପରିମିତ ଜମି ବି ଦେଇପାରିବି ନାହିଁ । ଆପଣମାନଙ୍କୁ ମୋର ପ୍ରଶ୍ନ—ଭଜନ ଘରଟିଏ ତିଆରି କରି ଭଜନ କଲେ ଆମର କେଉଁ ଦୁଃଖ ଘୁଚିଯିବ ? ଗାଁର ଅଶିକ୍ଷା ଅଜ୍ଞାନତା କଣ ଏହାଦ୍ୱାରା ଦୂରହେବ ? କଲେଜ ପାଠ ଶେଷକରି ଯେଉଁ କେତେଜଣ ଯୁବକ ବେକାର ହୋଇ ଘରେ ବସିଛନ୍ତି, ଏହାଦ୍ୱାରା କ'ଣ ସେମାନଙ୍କର ପେଟ ପୂରିବ ? ଗାଁର ଗରିବ ପିଲା ବା ଝିଅ ପିଲା ଯେଉଁମାନେ

ଅର୍ଥାଭାବ ହେତୁ ଦୂରକୁ ପାଠ ପଢ଼ିବାକୁ ଯାଇ ନ ପାରି ଉଚ୍ଚଶିକ୍ଷାରୁ ବଞ୍ଚିତ ହେଉଛନ୍ତି ସେମାନେ କ'ଣ ଭଜନ କଲେ ଉପକୃତ ହୋଇପାରିବେ ? ଗାଁକୁ ଗଢ଼ିବା ଏବଂ ଗରିବଙ୍କୁ ଗୃହିଁବା ଏ ଦୁଇଟି କଥା ମୋ ଆଖିରେ ବଡ଼ ।

ଏ ସଭାରେ କେତେକ ଶିକ୍ଷିତ ପିଲା ଉପସ୍ଥିତ ଅଛନ୍ତି । ସେମାନେ ଗୃହଆଡ଼େ ବୁଲୁଛନ୍ତି, ବହୁ କଥା ଜାଣୁଛନ୍ତି, ପତ୍ରପତ୍ରିକା ପଢ଼ୁଛନ୍ତି, କିନ୍ତୁ ଗାଁ ପାଇଁ କରୁଛନ୍ତି କ'ଣ ? ଗାଁର ଅଧିକାଂଶ ସାହିକୁ ରାସ୍ତା ନାହିଁ, ବର୍ଷାଦିନରେ ଛୁଆପିଲା କି ହଇରାଣ ନ ହେଉଛନ୍ତି ସତେ ! ପାଣି କାଦୁଅରେ ସେମାନେ ନିୟମିତ ସ୍କୁଲକୁ ଆସିପାରନ୍ତି ନାହିଁ । ଆମେ ଗାଁର ଲୋକମାନେ ଇଚ୍ଛାକଲେ ଏ ରାସ୍ତାଗୁଡ଼ିକୁ କ'ଣ ବାନ୍ଧିଦେଇପାରନ୍ତେ ନାହିଁ ?

ଏହାଛଡ଼ା ଗାଁର ପରିବେଶକୁ ନିର୍ମଳ ରଖିବା ପ୍ରତି ମଧ୍ୟ କାହାରି ଧ୍ୟାନ ରହୁନାହିଁ । ଲୋକମାନେ ମଳମୂତ୍ର ତ୍ୟାଗକରି ରାସ୍ତାର ଦୁଇ ପାର୍ଶ୍ୱକୁ ପାଇଖାନାରେ ପରିଣତ କରି ଦେଉଛନ୍ତି । କୁକୁର ବିରାଡ଼ି କିମ୍ବା ଗାଈଗୋରୁ ମରିଗଲେ ତାହାର ଶବକୁ ଯୁଆଡ଼େ ପାରି ସିଆଡ଼େ ଫିଙ୍ଗିଦେଉଛନ୍ତି । ବର୍ତ୍ତମାନ ସମାଜରେ ବହୁ ଚିନ୍ତାଶୀଳ ବ୍ୟକ୍ତି ବିଭିନ୍ନ ପତ୍ରପତ୍ରିକାରେ ପରିବେଶକୁ ନିର୍ମଳ ରଖିବା ପାଇଁ ଯେଉଁ ବିବୃତ୍ତିମାନ ଦେଉଛନ୍ତି ତାହା କ'ଣ କାହାରି ଆଖିରେ ପଡ଼ୁନାହିଁ ? ସେହିପରି ବୃକ୍ଷରୋପଣ ପାଇଁ ସରକାର ଯେତେ ଚିତ୍କାର କରୁଥିଲେ ବି ଆମର ଚେତନା ଫେରୁନାହିଁ ।

ଦେଖନ୍ତୁ, ଆମେ ବୁଢ଼ାବୁଢ଼ୀ ଦି'ଟା । ଛୁଆପିଲା ଆମର କେହି ନାହାନ୍ତି । ସେଥିପାଇଁ ଆମେ ଦୁଃଖିତ ନୋହୁଁ । ଏ ଗାଁର ସବୁ ଛୁଆପିଲା ଆମ ନିଜର ଛୁଆପିଲା ଭଳି । ସେମାନଙ୍କ ଭବିଷ୍ୟତ ପାଇଁ ମୁଁ ଏପରି ଏକ ଅଦରକାରୀ ପ୍ରସ୍ତାବକୁ ମାନିନେଇପାରିବି ନାହିଁ; ବରଂ ମୁଁ ପ୍ରସ୍ତାବ ଦେଉଛି, ମୋର ସେହି ସମୁଦାୟ ଜମି ଉପରେ ହାଇସ୍କୁଲଟିଏ ଠିଆ ହେଉ। ଘରଡିଆରି ଓ ଅନ୍ୟାନ୍ୟ ଉପକରଣ ପାଇଁ ଯେତେ ଯାହା ଖର୍ଚ୍ଚ ଲାଗିବ, ମୁଁ ସେ ସବୁ ଅର୍ଥ ବହନ କରିବି ।"

ନିଧିଅଜାଙ୍କ କଥା ଶୁଣି ସମଗ୍ର ସଭା ନୀରବ ହୋଇଗଲା । ଉଁ କି ଚୁଁ କାହାରି ତୁଣ୍ଡରୁ ପଦେ ହେଲେ କଥା ବାହାରିଲା ନାହିଁ ।

ଏହା ଦେଖି ନଧିଅଜା ପୁଣି ସମସ୍ତଙ୍କୁ ଆହ୍ୱାନ ଦେଇ କହିଲେ, "ଦେଖନ୍ତୁ, ମୋ ପ୍ରସ୍ତାବ ଯଦି ଆପଣମାନଙ୍କର ମନକୁ ଆସୁଛି ତେବେ କାଲି ସକାଳେ ଆସନ୍ତୁ ଏହି ମହତ୍ କାର୍ଯ୍ୟର ଶୁଭଦେବା । ଶୁଭସ୍ୟ ଶୀଘ୍ରଂ ।"

ଏତକ କହି ନଧିଅଜା କାହାର ଉତ୍ତରକୁ ଅପେକ୍ଷା ନ କରି ସଭା ଛାଡ଼ି ଘରକୁ ଚାଲିଗଲେ । ତାଙ୍କ ପଛେ ପଛେ ଆଉ ମଧ୍ୟ ।

× × × ×

ସକାଳେ ନାଲି ସୂର୍ଯ୍ୟର ଚେନାଏ ସୁନାକିରଣ ଝରକାରେ ଛିଟ୍କି ଆସି ନଧିଅଜାଙ୍କ ବିଛଣାରେ ପଡ଼ିବାମାତ୍ରେ ସେ ଧଡ଼ପଡ଼ ହୋଇ ଉଠିପଡ଼ିଲେ । ଦୁଆର ଖୋଲି ଦେଖନ୍ତି ତ ଗାଁ ଗୋଟାକର ଲୋକ ହାତରେ ଝୁଡ଼ି କୋଦାଳ ଧରି ତାଙ୍କ ଆଦେଶକୁ ଅପେକ୍ଷା କରିଛନ୍ତି । ଏହା ଦେଖି ନଧିଅଜା ଖୁବ୍ ଖୁସି ହୋଇଗଲେ ଏବଂ ଆନନ୍ଦରେ କହି ଉଠିଲେ, "ଆରେ ପିଲାଏ, ଅପେକ୍ଷା କରିଛ କ'ଣ କୋଦାଳ ଉଠାଅ ।"

ଆଦେଶ ପାଇବାମାତ୍ରେ ମାଟି ଉପରେ ଏକ ସାଙ୍ଗରେ ଶହ ଶହ କୋଦାଳ-ଚୋଟ ଧୂମ ଧାମ୍ କରି ବର୍ଷିଗଲା ।

ନଧିଅଜାଙ୍କ ପାକୁଆ ପାଟିରୁ ହସର ଝରଣାଟିଏ ଝରିଆସି ସମସ୍ତଙ୍କ ପ୍ରାଣକୁ ଭିଜାଇ ଦେଲା ମାନବତାର ମହାପ୍ଲାବନରେ··· ।



# ଜହ୍ନ ଖେଳି

ଡ: ନରେନ୍ଦ୍ର ପ୍ରସାଦ ଦାସ






ଦୁଇ ହଜାର ମସିହାର ପ୍ରଥମ ସକାଳ । ବାପୁର ଜୀବନରେ ଆଜି ସବୁଠାରୁ ଆନନ୍ଦର ଦିନ । ସକାଳୁ ଗୋଡ଼ ତା'ର ତଳେ ଲାଗୁନାହିଁ । ତା' ଜୀବନର ସ୍ୱପ୍ନ ଆଜ କେତେ ଘଣ୍ଟା ପରେ ସାର୍ଥକ ହେବାକୁ ଯାଉଛି । ତା'ର ମନେ ଅଛି, ତା ଜନ୍ମ ପରେ ପରେ ୧୯୬୯ ମସିହାରେ ଆମେରିକାର ମହାକାଶଯାତ୍ରୀ ନିଲ୍ ଆର୍ମଷ୍ଟ୍ରଙ୍ଗ୍ ଜହ୍ନରେ ଓହ୍ଲାଇଥିଲେ । ସେତେବେଳେ ବାପୁ ଥିଲା ଏକ ଅଜ୍ଞାନ ଶିଶୁ । ମାତ୍ର ଶିଶୁର ଦଗେଣ୍ଟି ହସ, ଗୁଲୁରୁ ଗୁଲୁରୁ କଥା ସବୁ ଆସିବାବେଳକୁ ୧୯୭୫ ମସିହାରେ ଥରେ ଜହ୍ନରେ ଜୀବନ ସୃଷ୍ଟି ନେଇ ତା' ବାପାଙ୍କର ଏକ ଭାଷଣ ସେ ରେଡିଓରୁ ଶୁଣିଥିଲା । ସେଦିନ ତାହା ଶୁଣି ତା'ର ଶିଶୁମନରେ ଏକ ଅଜଣା ପୁଲକ ଆସିଥିଲା । ସେ ସ୍ଥିର କରିଥିଲା ଜହ୍ନରାଇଜକୁ ନିଜେ ଯାଇ ତା' ପିଲାମନର ଓରମାଣ ମେଣ୍ଟାଇବ ।

ସେହି ଘଟଣାର ପାଖାପାଖି ପଚଶବର୍ଷ ପରେ ଆଜି ବାପୁ ବାହାରିଛନ୍ତି ଜହ୍ନକୁ । ବୈଜ୍ଞାନିକ ବାପୁ ସାଙ୍ଗରେ ବାହାରୁଥିଲେ ତା'ର ସାନଭାଇ ବାବା ଓ ସାନୁ । ସାନୁଟା ପିଲାଟାଏ, ଏ ଅଭିଯାନର ଗୁରୁତ୍ୱ ସେ ବୁଝେନି । ପିଲାଦିନୁ ରକେଟ୍‌ର ଚିତ୍ର ଓ ଖେଳନା ଦେଖି ଦେଖି ଆଜି ସତସତିକା ରକେଟ୍‌ରେ ବସି ଯିବାକଥା ତାକୁ କେମିତି ସ୍ୱପ୍ନଭଳି ଲାଗୁଛି । ସେ ଖାଲି ଖୁସିରେ କାଲିଠୁ ଗୋଟେ ରବରର ରକେଟ କଣ୍ଢେଇରେ ବସି ଖପ୍ ଖପ୍ କରି ଡେଉଁଛି । ବାବାଟି ବଡ଼ଭାଇର ଛାଇଭଳି ଭାଇ ପାଖେ ପାଖେ ରହି ସାହାଯ୍ୟ କରୁଛି । ସାଙ୍ଗରେ ସେମାନଙ୍କର ଆହୁରି ଚାରିପାଞ୍ଚ ଜଣ ଯାଇ-ପାରିବେ । ଆଉ ଚାରିଜଣ ପିଲା ବି ବାହାରି ସାରିଲେଣି । ସେମାନେ ହେଲେ ମାମା, ବଲି, ପାର୍ଥ ଓ ବୁଲ୍‌ବୁଲ୍ । ଦଳପତି ହୋଇଥିବାରୁ ବାପୁର ଛାତି ଫୁଲି ଉଠୁଛି । ପୁଣି ଏତେ ଛୋଟପିଲାଙ୍କର ଦାୟିତ୍ୱ ନେଇଥିବାରୁ ମନଟା କେମିତି ଚଞ୍ଚଳ ହୋଇଯାଉଛି ।

ଜାନୁଆରୀ ମାସ—ଶୀତ ବଡ଼ ଜୋର୍ । ସକାଳୁ ଭାରି କାଲୁଆ ପବନ ବହୁଛି । ଘର ସାମ୍ନା ଧାନକ୍ଷେତରୁ ଧାନକଟା ସରିଯାଇଛି—ସେଠି ମୁଗଗଛ ସବୁ ଫୁଲଫଳରେ ମାଟିରେ ଲୋଟିଯାଉଛି । ଡାଳପତ୍ରରେ କାକର ଟୋପା ଟୋପା ହୋଇ ପଡ଼ୁଛି । ସୋରିଷ କିଆରୀ ଟିକିଟିକି ହଳଦିଆ ଫୁଲରେ ଅପୂର୍ବ ଶୋଭା ଧାରଣ କରିଛି । ମାମାଟି ବୁଦ୍ଧିଆ ଝିଅ । ତା'ର ସବୁ ବିଚାରବୁଦ୍ଧି ଖଟାଇ ସେ ଭାବୁଥିଲା ଏ ପୃଥିବୀ କେଡ଼େ ସୁନ୍ଦର । ପୃଥିବୀର ମାଟିପଥର, କୋବିକିଆରୀ, ସୋରିଷକିଆରୀ, ପାହାଡ଼ ଝରଣା ସବୁ ସୁନ୍ଦର । ତା'ପରେ ତା'ର ମନେପଡ଼ିଲା—ଏଇ ପୃଥିବୀର ଧୂଳିମାଟି, ଗଛଲତା ସବୁକୁ ପଛକରି କେଇଦିନ ପାଇଁ ସେ ଯିବ ଜହ୍ନମାମୁଁ ପାଖକୁ । ଜହ୍ନମାମୁଁ କଥା ମନେ ପଡ଼ିଯିବାରୁ ଆପେ ଆପେ ତା'ର ମୁହଁ ଓ ଆଖି ମାଟିଉପରୁ ଆକାଶ ଆଡ଼କୁ ଉଠିଗଲା । ସେ ଭାବିଲା ଜହ୍ନକୁ କାହିଁକି ମାମୁଁ କହନ୍ତି ! ଦଉଡ଼ିଯାଇ ମଝିଆଁ ଭାଇ ବାବାକୁ ଏକଥା ପଚାରିଲା ।

ଆକାଶକୁ ଚାହିଁ ବାବା ମଧ୍ୟ ସେତେବେଳେ ଭାବୁଥିଲା ଆକାଶର ନୀଳିମା କୋଉଠୁ ଏତେ ଆସିଲା ? ଖଣ୍ଡ ଖଣ୍ଡ ମେଘ ଭିତରୁ ଛାଣିହୋଇ ଆସୁଥିଲା ପୂର୍ବଦିଗରେ ଉଠିଆସୁଥିବା ସୂର୍ଯ୍ୟର କଅଁଳିଆ ନାଲିକିରଣ । ବାୟୁମଣ୍ଡଳରେ ପୂରିରହିଥିବା ନାନା ସ୍ତର ଦେଇ ଆସୁଥିବା ଏଇ କିରଣ

ସତରେ କି ଶକ୍ତିମାନ, କି ପ୍ରତିଭାବାନ ! ଏହି ସୂର୍ଯ୍ୟ କିରଣକୁ ପାଣ୍ଡିକରି ପୃଥିବୀରେ ସବୁ କ୍ଷେତ୍ରେ ଚୂଳ ହୋଇଛନ୍ତି । ଏହି ସୂର୍ଯ୍ୟ କିରଣରୁ ଉତ୍ତାପକୁ ସାଇତି, ତାକୁହି ଇନ୍ଧନ କରି ଅଜି ତାଙ୍କ ରକେଟ୍ ଉଠିବ ଆକାଶରେ ଜହ୍ନକୁ । ସତରେ ଜହ୍ନରାଇଜ କେଡ଼େ ମନଲୋଭା ହୋଇଥିବ ! ଜହ୍ନ କହିଲେ ମନରେ ଯେଉଁ ଶୀତଳ କଅଁଳ ପରଶ ଲାଗେ, ସେଥିପାଇଁ ହିଁ ଜହ୍ନ ବଡ଼ ଆପଣାର ଲାଗେ । ପୁଣି ପୃଥିବୀକୁ ମା' କହୁଥିବାରୁ ଏବଂ ପୃଥିବୀ ଦେହରୁ ଖଣ୍ଡେ ଛିଣ୍ଡିଯାଇ ଜହ୍ନର ଜନ୍ମ ହୋଇଥିବା କଥା ବିଶ୍ବାସ କରୁ-ଥିବାରୁ ଜହ୍ନକୁ ମା'ର ଭାଇ କହି ଅମେ ଜହ୍ନମାମୁଁ ବୋଲି ଡାକଥାଉ ।

ବାବାଠାରୁ ଜହ୍ନର ଜନ୍ମ ଓ ମାମୁଁ ପଣିଆ ଶୁଣିଲାବେଳକୁ ମାମା ଭାବୁଥିଲା ତାଙ୍କ ରକେଟରେ ଗୁଳକ କିଏ ହେବ ? ବାପୁ ଓ ବାବା ତ ପୂର୍ବ ଦଳଟିର ଦାୟିତ୍ବରେ । ବଳି ଓ ବୁଲ୍‌ବୁଲ୍‌ଙ୍କୁ ନେଇ ମାମା ତାଙ୍କ ଦଳର ଖିଆପିଆ କଥା ବୁଝିବ ବୋଲି ସ୍ଥିର କଲା । ତେବେ ସାନୁ ଓ ପାର୍ଥି ଯେ ରହିଗଲେ, ସେଇମାନେ ବୋଧହୁଏ ରକେଟ ଚଳାଇବେ । ମାତ୍ର ସେ ଦୁହେଁ କ'ଣ ରକେଟ୍ ଚଳେଇ ପାରିବେ ? ମାମା ଏମିତି ଭାବୁ ଭାବୁ ସେଠାରେ ବାପୁ ପହଞ୍ଚି, ସବୁ ଯୋଗାଡ଼ ସରିଥିବା କଥା ଘୋଷଣା କଲା । ତେବେ ବାପୁର ମନ ମଧ୍ୟ ଅସ୍ଥିର ଥିଲା । କାରଣ ରକେଟ ଇଞ୍ଜିନ ଚଳେଇବାପାଇଁ ତିନିଜଣ ହୋଇଥିଲେ ଭଲ ହୋଇଥାନ୍ତା ବୋଲି ସିଏ ମଧ୍ୟ ଭାବୁଥିଲା ।

ଏତିକିବେଳେ ସେଠି ପହଞ୍ଚିଗଲା ତାଙ୍କର ଆଉଜଣେ ଭାଇ ପାଇଲଟ୍ ଭାନୁ ମହାନ୍ତି । ଭାନୁ ସବୁ ଶୁଣି ଖୁସିରେ ବାହାରିପଡ଼ିଲା ରକେଟ ଚଳେଇନେବ ବୋଲି । ଏଥର ପୂର୍ବ ଦଳଟି ଏକାଠି ବସି ନିଜ ନିଜର କାମ ବାଣ୍ଟିନେଲେ । ସବୁ କଥା ଚିକ୍‌ନଖ୍ କରି ତନଖି ନେଲେ । ସବୁ ଯୋଗାଡ଼ ସରିଗଲା । ସଞ୍ଜ ୭ଟା ୩୦ ମିନିଟରେ ରକେଟ୍ ଉଡ଼ିବ ।

ବେଳ ବୁଡ଼ିଆସିଲାବେଳକୁ ବଡ଼ ପିଲାମାନଙ୍କର ମନ ଆନନ୍ଦ, ଆଶ୍ଚର୍ଯ୍ୟ ଓ ଏକ ଅଜଣା ଆଶଙ୍କାରେ କେମିତି ଚୁପ୍‌ଚୁପ୍ ହୋଇଯାଇଥିଲା । ସାନମାନେ କେତେବେଳେ ଯିବେ ବୋଲି ପାଟି କରି କମ୍ପାଉଥିଲେ । ରକେଟ୍ ଭିତରେ ଜିନିଷପତ୍ର ରଖିସାରି ସମସ୍ତେ ନିଜ ନିଜ ଆସନରେ ବସିଲାବେଳକୁ ସଞ୍ଜ ଛଅଟା ବାଜି ସାରିଥାଏ ।

ଆଜ ଶୁକ୍ଳ ଚତୁର୍ଦଶୀ । ଆକାଶରେ ଜହ୍ନ ବଡ଼ ଚୋପା ହୋଇ ଦିଶୁଛି । ତଳେ ବାପା ବୋଉ, ଦାଦା ଖୁଡ଼ୀ, ମାମୁଁ ମାଇଁ, ଅପା ପିଇସା ସମସ୍ତେ ଠିଆହୋଇଛନ୍ତି । ବଣଭୋଜିପାଇଁ ଗଲାଭଳି ବାପୁ ବାବାଙ୍କର ଦଳ ଜହ୍ନ ଖେଳପାଇଁ ବାହାରିଛନ୍ତି । ଏତିକିବେଳେ ଟର୍ଚ୍ଚ ଜାଳି ରକେଟ୍ ଛାଡ଼ିବା ପାଇଁ ସଙ୍କେତ ଦେବାଲାଗି ବାପୁ ଓ ସାନୁ ବାପାଙ୍କୁ ତାଙ୍କର କହିଲେ । ଏକ୍, ଦୁଇ, ତିନ୍, କହି ବାପା କମାଣ୍ଡର ଟର୍ଚ୍ଚଟା ଜାଳିଦେଲେ । ସାଙ୍ଗେ ସାଙ୍ଗେ ସାନୁ ରକେଟ୍ ଇଞ୍ଜିନର ସୁଇଚ୍ ମୋଡ଼ିଲା । ନ ଶୁଣିପାରିଲା ଭଳି ଏକ କ୍ଷୀଣ ଶବ୍ଦ କରି ରକେଟ୍ ଉଠିଲା ଆକାଶକୁ । ବୋଉ ଘଣ୍ଟା ଦେଖୁଥିଲେ—ଠିକ୍ ୭ଟା ୩୦ ।

ରକେଟ ଉଠୁଛି ଉପରକୁ, ଉପରକୁ, ଆହୁରି ଉପରକୁ, ଆହୁରି, ଆହୁରି ଉପରକୁ । ପିଲା ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଚାହିଁରହିଥା'ନ୍ତି ତଳକୁ, ପୃଥିବୀ ଆଡ଼କୁ । ତଳେ ଥିବା ଘର, ସହରସବୁର ଆଲୁଅ କ୍ରମଶଃ ମିଞ୍ଜି ମିଞ୍ଜି ହେଉଥିବା ତାରାଙ୍କଠୁ ବି ଆହୁରି ସାନ ଦିଶିଲା; ତା'ପରେ ଆଉ ମୋଟେ ଦିଶିଲାନି । ରକେଟ ଚାଲିଥାଏ ଉପରୁ ଉପରକୁ, ମେଘ ଟପି ବାଦଲର ଚେଉ କାଟି । ସବୁ ପିଲାଙ୍କ ମନ ହସ, ଆନନ୍ଦ ଓ ଆଶ୍ଚର୍ଯ୍ୟରେ କୁରୁଳି ଉଠୁଥାଏ ।

ଆକାଶରେ ହଠାତ୍ ଗୋଟିଏ ବଡ଼ ଅଲୁଅ ପିଣ୍ଡୁଳା ଦେଖାଗଲା । ବାପୁ ଦେଖିଲା ପିଲାଙ୍କ ଆଖିରେ ନିଦ ନାହିଁ । ପିଲାମାନଙ୍କୁ ସେ ବୁଝାଇ ବସିଲା ଯେ ଆକାଶରେ ଦେଖାଯାଉଥିବା ଅତି ଉଜ୍ଜ୍ୱଳ ଆଲୁଅ ପିଣ୍ଡୁଳାଟି ହିଁ ତାଙ୍କର ପ୍ରିୟ ପୃଥିବୀ । ଶୂନ୍ୟ ନଭୋମଣ୍ଡଳରେ ପୃଥିବୀ ମଧ୍ୟ ଚନ୍ଦ୍ରପରି ଏକ ବସ୍ତୁ । ଉଭୟ ଚନ୍ଦ୍ର ଓ ପୃଥିବୀ ସୂର୍ଯ୍ୟଠାରୁ ଆଲୋକ ପାଇ ଏଭଳି ଉଜ୍ଜ୍ୱଳ ଦିଶନ୍ତି । ଚନ୍ଦ୍ରଆଡ଼କୁ ଗଲାବେଳକୁ ପୃଥିବୀର ପବନ ଥିବା ବାୟୁମଣ୍ଡଳ କିଛି ଦୂର ପର୍ଯ୍ୟନ୍ତ ରହିବ । ସେହି ଅଞ୍ଚଳକୁ ଭୂମଣ୍ଡଳ କହନ୍ତି । ତା'ପରେ ଆରମ୍ଭହେବ ଶୂନ୍ୟମଣ୍ଡଳ ବା ହିଟଙ୍କୁ । ହିଟଙ୍କୁରେ ରକେଟ୍‌ର ଇଞ୍ଜିନ କାମ ନ କଲେ ସେମାନେ ଆଉ ଚନ୍ଦ୍ରକୁ ଯାଇପାରିବେନି କି ପୃଥିବୀକୁ ଫେରି ପାରିବେନି । ଏହା ଶୁଣି ସମସ୍ତେ କେମିତି ଡରିଗଲାପରି ହେଲେ । ମାତ୍ର ଏପ୍ରକାର ଆଶଙ୍କା ଆଦୌ ନାହିଁ ବୋଲି ବାପୁ ବୁଝାଇ ଦେବାରେ ସମସ୍ତେ ପୁଣି ଖୁସି ହେଲେ ।

ତ୍ରିଶଙ୍କୁପରେ ସେମାନେ ପହଞ୍ଚିବେ ଚନ୍ଦ୍ରମଣ୍ଡଳରେ । ସେଠାକାର ବାୟୁ ପୃଥିବୀର ବାୟୁଠାରୁ ହାଲୁକା ଓ ଭିନ୍ନ । ପୃଥିବୀର ବାୟୁରେ ଅମ୍ଳଜାନ ବାଷ୍ପ ରହିଛି । ତାକୁ ଅକ୍ସିଜେନ୍ ମଧ୍ୟ କୁହାଯାଏ । ପ୍ରତ୍ୟେକ ଜୀବ ଏହି ଅକ୍ସିଜେନ୍‌କୁ ନିଜ ପ୍ରଶ୍ୱାସରେ ନାକବାଟେ ଦେହଭିତରକୁ ନିଅନ୍ତି । ଏହାରି ସାହାଯ୍ୟରେ ଦେହ ଭିତରେ ଆମେ ଖାଉଥିବା ଖାଦ୍ୟରୁ ଶକ୍ତି ଜାତ ହୁଏ । ଏହି ଶକ୍ତିଯୋଗୁଁ ଆମେମାନେ ବଢ଼ୁଁ, ରୋଗସାଙ୍ଗରେ ଲଢ଼ୁ, ନାନା ରକମର କାମ କରୁଁ । ଚନ୍ଦ୍ରର ବାୟୁରେ ଏହି ଅକ୍ସିଜେନ୍ ନାହିଁ ।



ଚନ୍ଦ୍ରର ବାୟୁମଣ୍ଡଳରେ ଅକ୍ସିଜେନ୍ ନ ଥିବାରୁ ସେଠାରେ ବଞ୍ଚି-ରହିବା କଷ୍ଟ । ସମସ୍ତେ ପୁଣି ଡରିଗଲେ—ଭାବିଲେ ସେମାନେ ତ ଅକ୍ସିଜେନ ଆଣିନାହାନ୍ତି, କ'ଣ କରିବେ ? ତହୁଁ ବାବା ସେମାନଙ୍କୁ ବୁଝେଇଦେଲେ ଯେ ଚନ୍ଦ୍ରଯାତ୍ରାପାଇଁ ସେମାନଙ୍କର ଯେଉଁ ସ୍ୱତନ୍ତ୍ର ପୋଷାକ ତିଆରି ହୋଇଛି, ତା'ର ବଡ଼ ପକେଟ ଭିତରେ ଏକ ତରଳ ପଦାର୍ଥ

ରଖାଯାଇଛି । ସେଇଥିରୁ ମାସେକାଳ ବ୍ୟବହାର କରିବାପାଇଁ ଅକ୍‌ସିଜେନ ବାହାରିବ । ଏତିକରେ ସମସ୍ତେ ପୁଣି ନିଶ୍ଚିନ୍ତ ହୋଇଗଲେ, ସଭିଙ୍କ ମୁହଁରେ ହସ ବାହାରିଲା ।

ଏତିକିବେଳେ ରକେଟ୍ ପାଖରେ ଜଳନ୍ତା ନିଆଁଖଣ୍ଡଭଳି ଗୋଟେ କ'ଣ ଛୁଟିକି ଗଲାପରି ଜଣାଗଲା । ଏହା ଗୋଟେ ଉଲ୍‌କାପିଣ୍ଡ ବୋଲି ମାମା କହିଲା । ଏମିତିକା କେତେ ବସ୍ତୁ ଏହି ନଭୋମଣ୍ଡଳରେ ସବୁବେଳେ ଧାଁଦଉଡ଼ କରୁଥାନ୍ତି ବୋଲି ବହିରୁ ପଢ଼ିଥିବା କଥା ସେ ଜଣେଇଲା । ସ୍ୟା' ପରେ ରାତି ବେଶି ହୋଇଯାଉଛି ବୋଲି ସମସ୍ତଙ୍କୁ ଶୋଇବାକୁ କହିଦେଇ ଦଳପତି ବାପୁ ଇଞ୍ଜିନ ପାଖରେ ବସିରହିଲା । ସେତେବେଳକୁ ଭାନୁ ଓ ପାର୍ଥ ଶୋଇସାରିଥିଲେ । ସାନୁ ରହିଥିଲା ରକେଟ ଇଞ୍ଜିନ ଚଳେଇବା ଦାୟିତ୍ୱରେ । ଘର ଛାଡ଼ିଲାବେଳୁ ଏତେ ରାତିଯାଏ ସାନୁ ଏତେବଡ଼ ଦାୟିତ୍ୱ ମୁଣ୍ଡେଇଥିବାରୁ ବଡ଼ଭାଇ ବାପୁ ତାକୁ ଗେଲକରି ପିଠି ଥାପୁଡ଼େଇଦେଲା ଓ କହିଲା ଶୋଇଯିବାପାଇଁ । କିଛି ସମୟପରେ ସାନୁ ମଧ୍ୟ ଶୋଇଗଲା । ରକେଟକୁ ଆପେ ଆପେ ସୁରୁଖୁରୁରେ ଚଳେଇ ନେବାର ବୋତାମ ଟିପିଦେଇ ବାପୁ ମଧ୍ୟ ଶୋଇବାକୁ ଗଲା ।

ହଠାତ୍ ରକେଟ୍ ଆଲାର୍ମର ଟ୍ରିଂ ଟ୍ରିଂ ଶବ୍ଦରେ ନିଦ ଭାଙ୍ଗିଲା । ବାପୁ ଧଡ଼ପଡ଼ ହୋଇ ଉଠିଲାବେଳକୁ ଦେଖିଲା ଦିନ ହେଇ ଯାଇଛି—ଟାଣ ଖରା ପଡ଼ୁଛି । ଆଲାର୍ମ ପାଖକୁ ଯାଇ ବାପୁ ଦେଖିଲା କାହିଁ କେତେଦୂର ଛାଡ଼ିଆସିଥିବା ପୃଥିବୀରେ ତାଙ୍କ ଘରୁ ବାପା ତା'ର ବେତାର ସଙ୍କେତ ଦେଇ ଡାକୁଛନ୍ତି—ସେମାନଙ୍କର ଭଲ ମନ୍ଦ ପଚାରୁଛନ୍ତି । ବାପାଙ୍କ ସ୍ୱରପରେ ଶୁଭିଲା ବୋଉଙ୍କ ସ୍ୱର । ପିଲାମାନେ ଉଠିଲେଣି କି ନାହିଁ, ଖାଇଲେଣି କି ନାହିଁ ବୋଲି ବୋଉ ପଚାରିଲେ । ସବୁ ଭଲରେ ଭଲରେ ଚାଲିଥିବା କଥା କହିଦେଇ ବାପୁ ଦଳର ଅନ୍ୟମାନଙ୍କୁ ଡାକିଲା । ସାନୁ ତା' ବୋଉସହିତ ଦି ପଦ କଥା କହି ଚେହ୍ଲା ହେଲା ।

ସମସ୍ତେ ଏକାଠି ହେଲାବେଳକୁ ରକେଟସହ ମୂଳ ଚନ୍ଦ୍ରଯାନ ଧୀରେ ଧୀରେ ଚନ୍ଦ୍ରପୃଷ୍ଠରେ ଓହ୍ଲାଉଛି । ମାତ୍ର କେଇ ମିନଟ ଭିତରେ ନିଜ ନିଜର ସ୍ୱତନ୍ତ୍ର ପୋଷାକ ସମସ୍ତେ ପିନ୍ଧିନେଲେ । ଏଥର ସେମାନେ ପ୍ରସ୍ତୁତ ଚନ୍ଦ୍ରରେ

ଓହ୍ଲାଇ ବୁଲିବାପାଇଁ । ଚନ୍ଦ୍ର ପୋଷାକ ପିନ୍ଧି କେମିତି ନୂଆ ନୂଆ ଲାଗୁଥାଏ । ଘରୁ ବାହାରିଲାବେଳେ ଏ ପୋଷାକ ଯେତେ ଓଜନଆ ଲାଗୁଥିଲା, ଏବେ ଆଉ ସେମିତି ଲାଗୁନ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଏଭଳି ହାଲୁକା



ଲାଗିବାର କାରଣ ଜାଣିବାକୁ ସମସ୍ତେ ବଡ଼ଭାଇ ବାପୁ ପାଖରେ ରୁଣ୍ଡ ହେଲାବେଳକୁ ସହକାରୀ ଦଳପତି ମହିଆଁ ଭାଇ ବାବା କହିଲା, "ଏଇଟା ତ ଏମିତି ଲାଗିବା କଥା । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।"

ପୃଥିବୀରେ ବା ଚନ୍ଦ୍ରରେ ଗୋଟିଏ ପଦାର୍ଥର ଓଜନ, ସେଇ ପଦାର୍ଥଟିକୁ ପୃଥିବୀ ବା ଚନ୍ଦ୍ର ନିଜର କେନ୍ଦ୍ରଆଡ଼କୁ ଟାଣୁଥିବା ଶକ୍ତିଯୋଗୁଁ ହୋଇଥାଏ । ଏହି ଶକ୍ତିକୁ ମାଧ୍ୟାକର୍ଷଣ ଶକ୍ତି କହନ୍ତି । ଚନ୍ଦ୍ରର ମାଧ୍ୟାକର୍ଷଣ ଶକ୍ତି ପୃଥିବୀର ମାଧ୍ୟାକର୍ଷଣ ଶକ୍ତିର ପ୍ରାୟ ଛଅଭାଗରୁ ଭାଗେ ହୋଇଥିବାରୁ, ଯେ କୌଣସି ଜିନିଷର ଚନ୍ଦ୍ର ଓଜନ ପୃଥିବୀ ଓଜନର ଛଅଭାଗରୁ ଭାଗେ ହେବ । ସାନୁ ଏଇଠି ପାଟିକରି ପଚାରିଲା ଯେ ତା'ର ଓଜନ ତ ୨୪ କିଲୋ

ଥିଲା, ଏଇନେ କ'ଣ ଚନ୍ଦ୍ର ଉପରେ ତା' ଓଜନ ମୋଟେ ୪ କିଲୋ ହେବ ! ସାଙ୍ଗରେ ଆଣିଥିବା ଓଜନ ମେସିନ ଉପରେ ଠିଆ ହେଲାବେଳକୁ ସତ-ସତିକା ତା' ଓଜନ ସାଢ଼େ ତିନି କିଲୋରୁ ଟିକିଏ ବେଶି ହେଲା । ସମସ୍ତେ ହସି ହସି ଗଡ଼ିଗଲେ । ଏଇ ଖୁସିରେ ଦୌଡ଼ିଲାବେଳକୁ ଦେଖିଲେ, ପୃଥିବୀରେ ଜୋର୍‌ରେ ଦୌଡ଼ିବାପାଇଁ ଯେତିକି କଷ୍ଟ କରୁଥିଲେ, ତା'ଠୁ ଅଳ୍ପ କଷ୍ଟରେ ତା'ଠାରୁ ଆହୁରି ବେଶି ଜୋର୍‌ରେ ସମସ୍ତେ ଦୌଡ଼ିପାରୁଛନ୍ତି । ଗୋଡ଼ ଉଠିଲାବେଳକୁ ଟିକିଏ ଚେଷ୍ଟାରେ ବହୁତ ଉଚ୍ଚକୁ ଉଠିଯାଉଛନ୍ତି । ସିନେମାରେ ଅବା ଟେଲିଭିଜନରେ ବେଳେବେଳେ ବିଜ୍ଞାପନର ଘୋଡ଼ା କି ମଟରସାଇକେଲ ଅତି ଧୀରେ ଧୀରେ ନାଚି ନାଚି ଡେଇଁଲାପରି ଏମାନେ ସବୁ ଡେଉଁଛନ୍ତି । ବାପୁ ଓ ବାବା ସେତେବେଳକୁ ଲାଗିଯାଇଥାନ୍ତି ଜହ୍ନର ମାଟି ପଥର ଦେଖିବାରେ ।

ଜହ୍ନର ମାଟି ଟିକିଏ କଳା, ପାଉଁଶ ପରି ଫମ୍‌ସା । ପୃଥିବୀକୁ ଏଇ ମାଟିରୁ କିଛି ନେବାପାଇଁ ବାପୁ ରଖିନେଲା । ଚନ୍ଦ୍ର ଉପରେ ଗୋଟେ ଗୋଟେ ଜାଗାରେ ଖୁବ୍ ବଡ଼ ବଡ଼ ଗାତ ଥିବାର ଦେଖାଗଲା । ବାବା କହୁଥିଲା ତାକୁ ସବୁ କ୍ରେଟର୍ କହନ୍ତି । ପୁଣି ଏମିତିକା ଗୋଟିଏ କ୍ରେଟର୍ ଭିତରେ ତାଙ୍କୁ ସବୁ ବିଶ୍ରାମ ନେବାକୁ ହେବ । ମାଟି ଉପରେ କ୍ରେଟରର ମୁହଁକୁ ଏକ ଖୁବ୍ ଶକ୍ତ ଫାଇବରଗ୍ଲାସ୍ ଘୋଡ଼ଣୀଦ୍ୱାରା ବନ୍ଦ କରିବାକୁ ହେବ । ସେହି ଘୋଡ଼ଣୀବାଟେ କିନ୍ତୁ ସୂର୍ଯ୍ୟର ଆଲୋକ ଅବାଧରେ କ୍ରେଟର ଭିତରେ ପଡ଼ିପାରୁଥିବ । ଏତିକିବେଳେ ସେମାନଙ୍କଠାରୁ ଅଳ୍ପ ଦୂରରେ ବିରାଟ ପଥରଟାଏ କଚାଡ଼ିପଡ଼ିଲା । ଚନ୍ଦ୍ରଦେହରେ ପ୍ରାୟ ପ୍ରତି ମୁହୂର୍ତ୍ତରେ ଏମିତି ଉଲ୍‌କା ପିଟିହୋଇପଡ଼େ ବୋଲି ବହିରେ ପଢ଼ିଥିବା କଥା ମାମା ଶୁଣାଇଦେଲା । ଏହାପରେ ଉଲ୍‌କାପାତରୁ ରକ୍ଷାପାଇବାପାଇଁ ସେମାନଙ୍କୁ କ୍ରେଟର ମୁହଁରେ ଘୋଡ଼ଣୀ ଦେଇ ରହିବାକୁ ପଡ଼ିବ ବୋଲି ସାନୁ ବୁଝାଇଦେଲା ।

ଚନ୍ଦ୍ରରେ ପିଲାମାନେ ବୁଲୁବୁଲୁ ବାପୁ ଗୋଟିଏ କ୍ରେଟର ବାଛିନେଇ ସମସ୍ତଙ୍କୁ ତା'ଭିତରକୁ ଡାକିନେଲା । ସେତେବେଳକୁ ସମସ୍ତଙ୍କୁ ଭୋକ ବି ଲାଗିଲାଣି । କ୍ରେଟର ଭିତରେ ପଶି ମାମା, ବିଲି ଓ ବୁଲ୍‌ବୁଲ୍ ମିଶି ସମସ୍ତଙ୍କ ପାଇଁ ଖାଇବା ଯୋଗାଡ଼କଲେ । ବାପୁ, ବାବା ମଧ୍ୟ ସେମାନଙ୍କୁ ସାହାଯ୍ୟ

କଲେ । ହସଖୁସିରେ ବସି ଖାଉ ଖାଉ ପାର୍ଥଙ୍କୁ ବଡ଼ ଶୋଷ ଲଗିଲା । ସାଙ୍ଗରେ ସେମାନେ ପିଇବାପାଇଁ ପାଣି ଆଣିଥିଲେ ବି ସାନୁ ସାଙ୍ଗରେ ଆଣିଥିବା ମୋଟା ଲଇଗଛର କାଠଖଣ୍ଡେ ପାର୍ଥଙ୍କୁ ବଢ଼ାଇଦେଲା ପିଇବାପାଇଁ ।

ସାନୁ ଶୁଣିଥିଲା ଆମ ବଣମାନଙ୍କରେ ଏମିତିକା ଲଇକାଠକୁ କାଟିଦେଲେ ପାଣି ବାହାରେ । ମାତ୍ର ପ୍ରଥମକରି ଏଇଠି ନିଜ ଆଖିରେ ତାହା ଦେଖି ସେ ଭାରି ଆଶ୍ଚର୍ଯ୍ୟ ହୋଇଗଲା । ଲଇକାଠଟାକୁ କାଟି ଓଲଟାଇ ଧରିଲାବେଳକୁ ତା'ଭିତରୁ ପାଣି ଝରିଆସିଲା । ଏତିକବେଳେ ବାପୁ ଓ ବାବା କଣଗୋଟେ କରିଦେବାରୁ ଢୋ'କନା ଶବ୍ଦ ହେଲା—ଯେମିତି ଫୋଟକା ଫୁଟିବା ଶବ୍ଦ । ଏହି ଶବ୍ଦ ହେଲା ଗୋଟିଏ ଜାର ଭିତରେ । ତା'ପରେ ଜାର୍‌ଭିତରେ ଶୂନ୍ୟରୁ କୋଉଠୁ ପାଣି ତିଆରିହୋଇ ଜମିଗଲା । ବାପୁ ବାବା ଦି'ଭାଇ ସମସ୍ତଙ୍କୁ ବୁଝାଇଦେଲେ ଯେ ଅକ୍‌ସିଜେନ ଓ ହାଇଡ୍ରୋଜେନ୍‌କୁ ଏକାଠି ମିଶେଇ ନିଆଁ ଧରେଇଦେଲେ ଯେଉଁ ସଂଘାତ ସୃଷ୍ଟି ହୁଏ, ସେଥିରୁ ଏମିତି ଶବ୍ଦ ବାହାରେ ଓ ପାଣି ତିଆରିହୁଏ । ସାଙ୍ଗରେ ଆଣିଥିବା ପାଣି ସରିଗଲେ ସେମାନଙ୍କୁ ଏହିପରି ଭାବରେ ପାଣି ତିଆରି କରି ପିଇବାକୁ ହେବ । ଏପରି ଫୋଟକା ମ୍ୟାଜିକ୍‌ରୁ ପାଣି ତିଆରି ଦେଖି ପିଲମାନେ ଏକବାର ତଟସ୍ଥ ହୋଇଗଲେ । ହେଟର୍‌ର ଗୋଟିଏ କଣରେ, ପୃଥିବୀରୁ ସାଙ୍ଗରେ ଆଣିଥିବା ମାଟିକୁ ଚନ୍ଦ୍ରର ମାଟିସହ ମିଶାଇ ତା'ଉପରେ ନିଜେ ତିଆରି କରିଥିବା ପାଣିକୁ ଢାଳିଦେଲେ ଦି' ଭାଇ । ପୃଥିବୀରୁ ସାଙ୍ଗରେ ଆଣିଥିବା କନ୍ଦ ଗଛ, ଶିଉଳୀ ଓ ମଞ୍ଜିକୁ ସେଠାରେ ପୋତିଦେଲା ବାପୁ ।

ହେଟରଭିତରେ ଖାଇପିଇସାରି ପିଲାଏ ହାଲିଆ ମାରିଲେ । ସେଇଭିତରେ ବାପୁ ବାବା ଗଛଲଗା, ମଞ୍ଜିପୋତା କାମ ସାରିଦେଲେ । ଏସବୁ ସରିଲାବେଳକୁ ସମସ୍ତଙ୍କୁ ନିଦ ମାଡ଼ିଆସୁଥିବାର ସମସ୍ତେ ଜାଣିଲେ । ମାତ୍ର ରାତି ହୋଇନି କି ଆସିଲାବେଳଠାରୁ କୌଣସିଭାବରେ ଦିନ ବଢ଼ିଥିବାର ବି ଜାଣି ହେଲାନି । ଗ୍ରେଟ ପିଲାମାନେ ଏହା ଦେଖି ଚନ୍ଦ୍ରରେ ବୋଧହୁଏ ଘଣ୍ଟା ଚାଲୁନି ବୋଲି ପାଟିକଲେ । ନ ହେଲେ ଦିନ କାହିଁକି ସରୁନି କି ରାତି ହେଉନି ? କନ୍ଦ ନ ହେଲେ ବି ବେଳବୁଡ଼ ତ ହୁଅନ୍ତା ! ସମସ୍ତେ ଭାଇଙ୍କ ଏହା ପଚାରିଲେ ।

ବାପୁ ପିଲମାନଙ୍କୁ ବସାଇ ବୁଝାଇଦେଲ ଯେ ଚନ୍ଦ୍ରରେ ଦିନରାତି ହୁଏ ସତ, ମାତ୍ର ତାହା ପୃଥିବୀର ଦିନରାତି ପରି ନୁହେଁ । ପୃଥିବୀରେ ଦିନକ ପ୍ରାୟ ବାରଘଣ୍ଟାର ହୁଏ । ଏଠି କିନ୍ତୁ ଗୋଟିଏ ଦିନ ପୃଥିବୀର ଏକାଠି ଚଉଦ ଦିନ ଓ ଚଉଦ ରାତି ସହିତ ସମାନ ହୁଏ । ମୋଟରେ, ଚନ୍ଦ୍ରର ଗୋଟିଏ ଦିନ ତିନଶହ ଛତିଶ ଘଣ୍ଟା । ଚନ୍ଦ୍ରରେ ଗୋଟିଏ ରାତି ମଧ୍ୟ ସେଠା ଦିନ ପରି ପୃଥିବୀର ୨୪ଘଣ୍ଟିଆ ୧୪ ଦିନ ସଙ୍ଗେ ସମାନ । ମୋଟାମୋଟି କହିଲେ, ପୃଥିବୀରେ ଆମର ଗୋଟିଏ ମାସ (୨୮ଦିନିଆ) ଚନ୍ଦ୍ରର ଗୋଟିଏ ଦିନ ! ସାନ ପିଲାଏ ଏହା ଶୁଣି ଖୁସିହେଲେ ଯେ ଯେମିତି-ହେଲେ ଚନ୍ଦ୍ରରେ ସେମାନେ ମୋଟେ ଶୋଇବେନାହିଁ, ଖାଲି ଖେଳୁଥିବେ । ରାତି ହେଲେ ସିନା ଶୋଇବେ !

ତା'ଛଡ଼ା ଏଠି ତ ବାପା ବୋଉ ନାହାନ୍ତି ଯେ 'ରାତି ବେଶି ହେଲାଣି, କାହିଁକି ଶୋଉନ' ବୋଲି ପାଟି କରିବେ ! ମାତ୍ର ଦିନସାରା ଖେଳିବାର ଖୁସି ବେଶି ସମୟ ରହିଲାନାହିଁ । ଜଣକପରେ ଜଣେ ଢୋଳେଇ-ବାକୁ ଲାଗିଲେ । ଯା' ଦେଖି ବାପୁ ସେମାନଙ୍କୁ ବୁଝାଇଦେଲ ଯେ ଖାଲି ରାତି ହେଲେ ଆମେ ଶୋଉନା । କାମ କରି କରି ଦେହର ସବୁ ଅଙ୍ଗ ହାଲିଆ ହୋଇଗଲେ ବିଶ୍ରାମ ଖୋଜନ୍ତି । ଆଉ ଆମେ ଆମର ସୁବିଧା ପାଇଁ ଏମିତି ଅଭ୍ୟାସ କରିଥାଏଁ ଯେ ଦିନସାରା କାମ କରି କରି, ଠିକ୍ ରାତିକୁ ଆମର ବିଶ୍ରାମ ଲୋଡ଼ାହୁଏ । ଏହି ବିଶ୍ରାମକୁ ଆମେ ନିଦ କହୁ । ଏହାପରେ ସମସ୍ତଙ୍କୁ ଶୋଇବାକୁ କହି ସେ ନିଜେ ମଧ୍ୟ ଶୋଇଗଲ ।

ଥରେ ନିଦରୁ ଉଠିଲେ ପିଲାଙ୍କର ଦଉଡ଼ ଆରମ୍ଭ ହୁଏ ଚନ୍ଦ୍ର ଉପରେ । ମାଟି, ପଥର, ମଳି ଉଲ୍‌କାଖଣ୍ଡ ଗୋଟାଉ ଗୋଟାଉ ପୁଣି ନିଦ ଆସିଯାଏ । ଏ ଭିତରେ କେତେ ମାପଚୁପ୍ କରି ବାପୁ ଓ ବାବା ତାଙ୍କ ହେଟର ଭିତରେ ଅକ୍‌ସିଜେନ ଓ ଯବକ୍ଷାରଜାନ ତିଆରି କରି ରୁନ୍ଧିଥିଲେ । ଥରେ ହେଟର ଭିତରକୁ ଆସିଗଲେ ସେମାନଙ୍କୁ ପୃଥିବୀପରି ଲାଗୁଥିଲା— ସ୍ୱତନ୍ତ୍ର ପୋଷାକ ଖୋଲିଦେଇ ସେମାନେ ସାଧା ପୋଷାକରେ ରହି-ପାରୁଥିଲେ । ଖାଲି ଯାହା ସବୁକିଛି ଅତି ହାଲୁକା ଲାଗୁଥାଏ । ଏ ଭିତରେ ମୋଟରେ ପାଞ୍ଚଥର ଶୋଇକରି ଉଠିଲେଣି ସମସ୍ତେ । ଶେଷଥର ଉଠିଲା-ପରେ ବାପୁ ସମସ୍ତଙ୍କୁ ଡାକି ଜଣେଇଦେଲ ଯେ ସେମାନେ ଘରୁ ଆସିବାର

ସପ୍ତାହଟିଏ ହୋଇଗଲା । ପିଲ୍‌ମାନେ ବିଶ୍ୱାସ କରି ପାରିଲେନି । ବାପୁର ଘଣ୍ଟାରେ ତାରିଖଦେଖା ଜାଗାକୁ ସାନୁ ଓ ବୁଲ୍‌ବୁଲ୍ ପରୀକ୍ଷା କଲେ । ଅନ୍ୟମାନେ ବି ତାରିଖ ପଢ଼ିଲେ । ଘଣ୍ଟାରେ ୭ ତାରିଖ ଦେଖାଯାଉଥିଲା । ଘରେ ବାପା ବୋଉଙ୍କୁ କହିଥିଲେ ତିନି ଚାରି ଦିନ ଭିତରେ ଫେରିଯିବେ । ମାତ୍ର ଏତେଦିନ ହୋଇଗଲା । ଅବଶ୍ୟ ଏ ଭିତରେ ପୃଥିବୀରେ ଥିବା ବାପା ବୋଉଙ୍କ ସହ ବାପୁ, ବାବା ଓ ସାନୁ ଆଦି ପିଲାଏ ବ୍ୟରିଥର ବେତାର-ଯୋଗେ କଥା ହୋଇଛନ୍ତି—ତେଣୁ କାହାରି ଚିନ୍ତା ନାହିଁ । ତଥାପି ୭ ତାରିଖ ଦେଖି ସେଇଦିନ ଚନ୍ଦ୍ରରୁ ଫେରିଯିବାକୁ ହେବ ବୋଲି ବାପୁ ଘୋଷଣା କଲା ।

କ୍ରେଟରୁ ଛାଡ଼ିବା ପୂର୍ବରୁ ସେଠାରେ ଲଗାଇଥିବା ଗଛପତ୍ରକୁ ବାପୁ ପରୀକ୍ଷାକଲା । ଗଛଗୁଡ଼ିକ ନୂଆ ପତ୍ର ପକେଇଲେଣି । ଘରୁ ଆଣିଥିବା ନେଉଟିଆଗଛରେ କେଇଟି ଶାଗ ପୋକ ଥିଲେ । ସେହି ପୋକଗୁଡ଼ିକ ମଧ୍ୟ ବଡ଼ ହେଲେଣି । ଶିଉଳୀ କେତେ ମାଡ଼ିଲାଣି । ମଞ୍ଜିରୁ ଉଠିଥିବା ନୂଆ ଗଛ ଦୁଇଟିର ପତ୍ର ପକେଇଲେଣି । ଏସବୁ ଦେଖି ବାପୁ ଭାରି ଖୁସି ହେଲା । ସେ ଭାବୁଥିଲା ଯେ ଚନ୍ଦ୍ରରେ ଯାହା ଯେମିତି ଆପଣାଛାଏଁ ଅଛି, ସେଥିରେ କୌଣସି ଜୀବ ରହିପାରିବେନି । ମାତ୍ର ପୃଥିବୀରୁ କିଛି ମାଟି ଆଣି, ଚନ୍ଦ୍ରରେ ଥିବା ମାଟି ସହ ମିଶାଇଦେଲେ, ସେଥିରେ ସେମିତି ତିଆରିକରି ପାଣି-ଦେଲେ ତହିଁରେ ଜୀବ ବଢ଼ିପାରିବେ । ତା'ପୂର୍ବରୁ କ୍ରେଟର୍‌ମାନଙ୍କ ଭିତରେ ଏ ପ୍ରକାର ପରୀକ୍ଷାକରି ଅକ୍‌ସିଜେନ ଛାଡ଼ ଗଛ ଲଗାଇଦେଲେ, ଗଛସବୁ ବଢ଼ିବେ ।

ଶେଷରେ କ୍ରେଟର ଭିତରେ ଜୀବ ବଞ୍ଚିବାପାଇଁ ସବୁ ମିଳିଯିବ । ସେଠାରେ ପ୍ରାଣୀମାନେ ବି ବଞ୍ଚିବେ, ଗଛରୁ ଅମ୍ଳଜାନ ଓ ଖାଦ୍ୟ ପାଇକରି । ଫଳରେ ଚନ୍ଦ୍ରର ବାୟୁମଣ୍ଡଳ କ୍ରମଶଃ ଜୀବଜଗତ ପାଇଁ ପୃଥିବୀର ବାୟୁ-ମଣ୍ଡଳପରି ଅନୁକୂଳ ହୋଇଯିବ । ନିଜ ପରୀକ୍ଷାରୁ ଏତକ ସଫଳତା ପାଇ ବାପୁ ଭାବିଲା ଭବିଷ୍ୟତରେ ଚନ୍ଦ୍ରରେ ସେ' ହିଁ ଗୋଟେ ଗାଁ ବସାଇବ । ଏହି ସ୍ୱପ୍ନ ଧରି, ସାନ ଭାଇ ଭଉଣୀଙ୍କୁ ନେଇ ସେ ଶୀଘ୍ର କ୍ରେଟର ଭିତରୁ ବାହାରି ପଡ଼ିଲା ।

ବାପୁ ପଛେରେ ଚାଲିଥିଲେ ସାନୁ, ବଳି, ବୁଲ୍‌ବୁଲ୍, ପାର୍ଥ, ଭାନୁ ଓ ମାମା । ସବାପଛରେ ଥିଲା ସାନଦଳପତି ବାବା । ଏଭରେଷ୍ଟ ପର୍ବତ

ଚଢ଼ୁଥିବା ଲୋକଙ୍କପରି ଗୋଟିଏ ଧାଡ଼ିରେ ସବୁ ଭାଇ ଭଉଣୀତକ ଯାଇ ରକେଟ ଭିତରେ ପଶିଲେ । ସେତେବେଳକୁ ଚନ୍ଦ୍ରର ଦିନ ହଠାତ୍ ସରି ଆସୁଥିଲା ପରି ତାଙ୍କୁ ଜଣାଗଲା । ଚନ୍ଦ୍ରର ରାତି କେଡ଼େ ଲମ୍ବା ଭାବି ସମସ୍ତେ ଚଞ୍ଚଳ ଚନ୍ଦ୍ର ଛାଡ଼ିବାକୁ ସ୍ଥିର କଲେ । ଲମ୍ବା ରାତି ସହିହେବ ନାହିଁ—ଅନ୍ଧାର ଘୁଡ଼ୁଘୁଡ଼ୁ ମାଡ଼ିଆସିବ କହି ସାନ ପାଇଲଟ ସାନୁ ଇଞ୍ଜିନର ସୁଇଚ୍ ଟିପିଦେଲା । ସେତିକବେଳକୁ ବାବା ଓ ବାପୁ ବେତାର ସଙ୍କେତ ପଠାଇ ବାବା ବୋଉଙ୍କୁ ଖବର ଦେଉଥିଲେ ସେମାନେ ସବୁ ମଜାରେ ଫେରୁଛନ୍ତି ବୋଲି !

# ସେଇ କଲମଟି ପାଇଁ

## ଦୁର୍ଗାଚରଣ ପଟ୍ଟନାୟକ



ତୁମେ ସବୁ କ'ଣ ବାବୁନକୁ ଚିହ୍ନ ? ଖୁବ୍ ଭଲ ପାଠ ପଢ଼େ ସେ । ଏଇ ବୈଶାଖ ମାସରେ ତାକୁ ନଅ ପୂରି ଦଶ ଚାଲିଲା । ଦୁଷ୍ଟାମି ବୋଲି କାହାକୁ କହନ୍ତି ଏ କଥା ସେ ମୋଟେ ଜାଣେ ନାହିଁ । ହେଲେ କ'ଣ ହେଲା ଗତ କେତେ ଦିନ ହେଲା ତା ଦେହ ଭାରି ଖରାପ । ତାଙ୍କ ସାହି ଶେଷ ମୁଣ୍ଡରେ ଯେଉଁ ଡାକ୍ତରବାବୁ ଅଛନ୍ତି, ସେ ଆସି କହିଯାଇଛନ୍ତି ଯେ ଖାଇବା ପିଇବାରେ ଖୁବ୍ ସାବଧାନ ହେବାକୁ ପଡ଼ିବ; ଆଉ ଯେତେବେଳେ ସମସ୍ତେ ମିଳିବ ଟିକିଏ ଚାଲିବୁଲି କରିବାକୁ ହେବ । ତା ବୋଲି ସ୍କୁଲ ପଢ଼ିଆରେ ଧାଁଦଉଡ଼ ବା ଗ୍ରେଟ ଗ୍ରେଟ ବାଉଁଶ କାଠି ତିନ ଖଣ୍ଡ ପୋତି କ୍ରିକେଟ ଖେଳିବା ବନ୍ଦ ।

ବାବୁନର ବର୍ତ୍ତମାନ ଅଖଣ୍ଡ ଅବସର । ଉପର ମହଲାରେ, ପଢ଼ା ଘର ଝରକା ପାଖରେ ଚୁପ୍‌ଚାପ୍ ବସି ତାଙ୍କ ଘର ଆଗରେ ଥିବା ନଡ଼ିଆ

ଗଛରେ ଓଠଖଣ୍ଡିଆ କାଉଟା କପର ହଳଦୋହଳ ଗୀତ ଗାଉଥାଏ ବାବୁନ ତାକୁଇ ଦେଖି ସମୟ କାଟେ ।

ଶ୍ରାବଣ ମାସରେ କାହୁଁ ବା ଶୁଖିଲା ପାଗ ମିଳିବ ? ଗତ ଗୁରି ପାଞ୍ଚ ଦିନ ହେଲା ପାଗଟା ଭାରି ମାଦାଳିଆ ଥିଲା । ତେଣୁ ଡାକ୍ତରଙ୍କ ଆଗ୍ରହ ଓ ଉପଦେଶ ସତ୍ତ୍ୱେ ବାବୁନ ବାହାରକୁ ବାହାରି ନ ଥିଲା । ଆଜି କିନ୍ତୁ ପାଗ ବେଶ୍ ଶୁଖିଲା ଥିବାର ଦେଖି ବାବାଙ୍କୁ ମାମା କହିଲେ, "ହଇଏ, ତୁମେ ପରା ବଜାରଆଡ଼େ ଯାଉଛ ? ବାବୁନକୁ ସାଥିରେ ନେଇ ଯାଉନ । ସେ ବି ଟିକେ ବୁଲିଆସିବ, ଆଉ ବାହାର ପବନ ଲାଗିଲେ ତା ମନ ବି ଟିକେ ଭଲ ଲାଗିପାରେ । କିନ୍ତୁ ହେଇଟି ଦେଖ, ତାକୁ ବାହାର ଜିନିଷ କିଛି ଖୋଇବ ନାହିଁ ।" ହସି ହସି ବାବା କହିଲେ, "ଆଉ, ଥାଉ, ମୋତେ ଆଉ ଉପଦେଶ ନ ଦେଲେ ଚଳିବ ।"

ଜାମାପଟା ପିନ୍ଧି ବାବାଙ୍କ ହାତ ଧରି ବାବୁନ ରାସ୍ତା ଉପରକୁ ଓହ୍ଲାଇ ଆସିଲା । ରାସ୍ତାରେ ବାଁ ପଟେ ଗ୍ଲଲିବା ତାର ସବୁ ଦିନର ଅଭ୍ୟାସ । ଡାହାଣ ହାତରେ ସେ ମୁଠେଇ ଧରିଥାଏ ବାବାଙ୍କ ହାତର ମଝି ଆଙ୍ଗୁଠିଟାକୁ । ରାସ୍ତାରେ ସାଇକେଲ୍, ରିକ୍ସା, ସ୍କୁଟର, ଶଗଡ଼, ଠେଲା-ଗାଡ଼ି, ଗାଈ-ଗୋରୁ ଓ ମଣିଷଙ୍କର ଅଜସ୍ର ଭିଡ଼ ଭିତରେ ଗ୍ଲଲୁ ଗ୍ଲଲୁ ବାବୁନକୁ ଲାଗିଲା ଯେପରି ସେ ନୂଆ କରି ବାହାରକୁ ଆସିଛି ।

ଏମିତି ସବୁ କଥା ହେଉ ହେଉ ବାବୁନ ଓ ବାବା ଯାଇ ବଜାରରେ ପହଞ୍ଚିଗଲେ । ତହିଁ ପରଦିନ ବୋଧେ ଗୋଟାଏ କିଛି ପର୍ବ ଥାଏ ନା କଣ । ସେଥିପାଇଁ ସେଦିନ ବଜାରରେ ଭାରି ଗହଳି ହୋଇଥାଏ । ବାବା ତେଣୁ ଫୁଟପାଥରୁ ଟିକେ ଗ୍ଲଡ଼ "ଚଉଧୁରୀ ଏମ୍ପୋରିୟମ" ବୋଲି ଯେଉଁ ବହି ଦୋକାନଟା ଅଛି ସେଇଠି ତାକୁ ଠିଆ କରାଇ ଦେଇ କହିଲେ, "ବାବୁନ, ତୁ ଏଇଠି ଛିଡ଼ା ହୋଇଥା । ବଜାରରେ ତ ଦେଖୁଛୁ କେଡ଼େ ଗହଳି । ମୁଁ ଯାଇ ସହଳ ସହଳ କିଛି ପରିବାପତ୍ର କଣାକଣି କରି ଆସେ । ତୁ ବି ଖାଲିଟାରେ ଏଠି ଛିଡ଼ା ହେବୁ କାହିଁକି ? ଏଠି ଦୋକାନରେ କେତେ କିସମର ବହି ଅଛି, ସବୁ ଦେଖୁଥା । ଏଠି ଯଦି ସେମିତି କିଛି ବହି ଥାଏ ଯୋଉଟା କି ତୋ ମନକୁ ପାଉଥିବ ଓ ଆମ ଘରେ ନଥିବ, ତାକୁ ବାଛି ରଖି ଥାଆ କି, ମୁଁ ଫେରିଲେ ଖଣ୍ଡେଅଧେ ନେବା ।"

ବାବା ଚାଲିଯିବା ପରେ ବାବୁନ ସେଇ ବାରଣ୍ଡାରେ ଛିଡ଼ା ହୋଇ ତାଙ୍କ ଯିବା ବାଟକୁ କିଛି ସମୟ ଯାଏ ଚାହିଁ ରହିଲା । ତାପରେ ଦୋକାନର ଥାକ ଉପରେ ସଜା ହୋଇଥିବା ବହିଗୁଡ଼ାକ ଆଡ଼େ ଚାହିଁ ଚାହିଁ ଗୁଣ୍ଡିଗୁଣ୍ଡି ହୋଇ ସେଗୁଡ଼ିକର ନାମ ପଢ଼ିବାରେ ଲାଗିଲା । ଅଧିକାଂଶ ବହି ପାଠ୍ୟପୁସ୍ତକ ଓ ବଡ଼ମାନଙ୍କ ପାଇଁ । ବାବୁନ ଆଖିରେ ଅବଶ୍ୟ "ଟମ୍‌କକାଙ୍କ କୁଟୀର", "ଚନ୍ଦ୍ରଲୋକରେ ପ୍ରଥମ ମଣିଷ", "ବୁଢ଼ୀମା କାହାଣୀ ଖଣି" ଇତ୍ୟାଦି କେତେ ଖଣ୍ଡ ବହି ପଡ଼ିଲା, କିନ୍ତୁ ସେସବୁ ତ ତାଙ୍କ ଘରେ ଅଛି । ଦୋକାନୀର ଥାକରେ ଅବଶ୍ୟ ଆହୁରି ଅନେକ ବହି ଥିଲା । କିନ୍ତୁ ସେଗୁଡ଼ିକ ଏମିତି ଭାବରେ ଲେଖା ହୋଇଥିଲା ଯେ ବାବୁନ ଯେତେ ଚେଷ୍ଟାକଲେ ବି ସେଗୁଡ଼ିକର ନାମ ପଢ଼ିପାରିଲା ନାହିଁ । ଅଗତ୍ୟା ସେ ଦୋକାନର ଅନ୍ୟ ଆଡ଼କୁ ଆଖି ଫେରାଇଲା । ଗୋଟିଏ ଆଲମାରିର କାଚ ଉପରେ ଲେଖା ହୋଇଥାଏ—"ଏଠାରେ ବିଭିନ୍ନ କିସମର କଲମ ମିଳେ ।"

କିଛି ଦିନ ତଳେ ବାବୁନ ବାବା, ମାମା ଆଉ ଅପା ହେଇକାଙ୍କ ସାଥିରେ ଗୋଟିଏ ଥ୍ରି-ଡି ଫିଲ୍ମ ଦେଖି ଯାଇଥିଲା । ଦୁଇଟି ଘଟଣା କେମିତି ଏକା ଥରେ ଘଟିପାରେ ସେ ସେଇ ଫିଲ୍ମରୁ ବୁଝି ପାରିଥିଲା । ଠିକ୍ ସେହିପରି "ଚଉଧୁରୀ ଏମ୍ପୋରିୟମ୍"ର ବାରଣ୍ଡାରେ ଛିଡ଼ା ହୋଇ ଦୋକାନରେ ବାଁ ପଟ ଆଲମିରାରେ ଲେଖା ଯାଇଥିବା "ଏଠାରେ ବିଭିନ୍ନ କିସମର କଲମ ମିଳେ" ପଢ଼ିଦେଇ ତା ମନରେ ଅନ୍ୟ ଏକ କଥା ଉଙ୍କିମାରିଲା । କଥାଟା ହେଲା—ବାବୁନର ବାବାଙ୍କର ଲେଖାଲେଖି କରିବା ଗୋଟିଏ ବଡ଼ ହବି । ବାବୁନ ତା ସ୍କୁଲର ମିଷ୍ଟମାନଙ୍କଠାରୁ ଓ ଘରକୁ ଗଲ୍ପ ଆଇଲା ଲୋକ-ମାନଙ୍କଠାରୁ ଶୁଣିଛି ଯେ ତା ବାବା ଭାରି ଭଲ ଗପ ଆଉ ନାଟକ ଲେଖନ୍ତି । ଆଉ ବାବାଙ୍କର କଲମରେ ଭାରି ସଉକ । ତାଙ୍କର ଗୋଟିଏ ଭାରି ଭଲ କଲମ ଥିଲା ଯେ ଥରେ ବସ୍‌ରେ ଯାଉ ଯାଉ କୋଉଠି ହଜିଗଲା । ବାବୁନ ଲକ୍ଷ୍ୟ କରିଦେଖିଛି ବାବା ସେଇ କଲମଟାକୁ ଭାରି ଝୁରି ହୁଅନ୍ତି । କଥା ପ୍ରସଙ୍ଗରେ ମାମା କେତେ ଥର ଅବଶ୍ୟ ଆଉ ଗୋଟେ ଭଲ କଲମ କିଣିବାକୁ କହିବାର ବାବୁନ ଶୁଣିଛି, ହେଲେ କଲମ କଥା ପଡ଼ିଲେ ବାବାଙ୍କର ହସିଲା ମୁହଁଟା ଗମ୍ଭୀର ହୋଇଉଠେ । କାହିଁକି ଏମିତି ହୁଏ ବାବୁନ ଅବଶ୍ୟ ମୋଟେ ଜାଣିପାରେନା । ବୋଧେ ଆଉ ସେମିତି କିଛି ଭଲ କଲମ ବଜାରରେ ମିଳେ ନାହିଁ ।

ବାରଣ୍ଡା ଉପରେ ଠିଆ ହୋଇ ବାବୁନ ନିଜ ଭାବନାରେ ମସ୍‌ଗୁଲ୍ ହୋଇଯାଇଥାଏ । କେତେବେଳେ ଏକ ଦୋକାନୀର ଡାକରେ ତାର ଭାବନା ରାଜ୍ୟରୁ ସେ ଫେରି ଆସିଲା । ଦୋକାନୀ କହୁଥାଏ—"ଛୁଆବାବୁ, କ'ଣ କିଛି କିଣିବ ?" ଦୋକାନୀର ଚେହେରା ଓ ତା କଥାକୁହା ଢଙ୍ଗ ବାବୁନ ମୋଟେ ପସନ୍ଦ କରି ପାରିଲାନି । କିନ୍ତୁ ପସନ୍ଦ ଅପସନ୍ଦ ବେଳ ତ ଇଏ ନୁହେଁ । ଦୋକାନୀର ପ୍ରଶ୍ନରେ ବାବୁନର ମୁଣ୍ଡରେ ବିଜୁଳି ଭଳି ଗୋଟେ ଆଇଡ଼ିଆ ଖେଳିଗଲା । ଆଚ୍ଛା—ଏଇ ଦୋକାନରୁ ଯଦି ଭଲ କଲମଟାଏ ନେଇ ବାବାଙ୍କୁ ପ୍ରେଜେଣ୍ଟ କରିହୁଏ— କେମିତି ହୁଅନ୍ତା । ଏଠି ଭଲ କଲମ ମିଳିପାରେ ହୁଏତ ! ଆଜି···ବାବା ତ ପୁଣି ତା ଜନ୍ମଦିନରେ ତାକୁ କେତେ ପ୍ରେଜେଣ୍ଟ ଦେଇଛନ୍ତି । ସିଏ ଯଦି ତାଙ୍କୁ··· । ଆଚ୍ଛା··· ବାବାଙ୍କର ଜନ୍ମଦିନ କେବେ ପଡ଼େ ଯେ—ହଁ—ସେପଟେମ୍ବର ଦୁଇ ତାରିଖ । ଆଜି ତ ପ୍ରାୟ ମାସେ ଖଣ୍ଡେ ରହିଲା । ବାଃ, ଭାରି ମଜା ହୁଅନ୍ତା । ବାବୁନ ଓ ଅପାମାନେ ବି ଖବର କାଗଜ ଓ ବାଜେ କାଗଜ ବିକା ଟଙ୍କା ଜମେଇ କିଛି ପାର୍ଟି କରିଛନ୍ତି । ସେଇଥିରୁ କଲମଟେ କିଣିନେଇ ବାବାଙ୍କୁ ତାଙ୍କ ଜନ୍ମଦିନରେ ପ୍ରେଜେଣ୍ଟ କଲେ ଭାରି ଭଲ ହୁଅନ୍ତା । ଭଲ କଲମଟେ ପାଇଲେ ବାବା ବି ବଢ଼ିଆ ବଢ଼ିଆ ଗପ, ନାଟକ ସବୁ ଲେଖନ୍ତେ ।

"ଛୁଆବାବୁ । ତୁମେ କ'ଣ କିଛି କିଣିବ ?" ଦୋକାନୀ ତାର ପ୍ରଶ୍ନ ଦୋହରାଇଲା ।

ବାବୁନ କହିଲା—"ତୁମ ପାଖରେ ଭଲ କଲମ ଅଛି ? ବେଶୀ ଦାମିକା—"

ବାବୁନର ଧାରଣା, ବେଶୀ ଦାମିକା କଲମ ନିଶ୍ଚେ ଭଲ କଲମ ହୋଇଥିବ ।

ଦୋକାନୀ କହିଲା—"ଇଃ···ଏଡ଼େ ଟିକେ ପିଲା । ବେଶୀ ଦାମିକା କଲମ କଣ କରିବ ? ଅଳ୍ପ ଦାମ୍‌ର ମଜଭୁତ ଦେଖି କଲମଟିଏ ନେଲେ ଭଲ ନା ! ନହେଲେ ତ ଖାଲି ପଇସା ନଷ୍ଟ । ଆଗ ବେଶୀ ବେଶୀ ପାଠ ପଢ଼ । ବଡ଼ ହେଲେ ଭଲ କଲମରେ ଲେଖିବ । ଏବେ ତ ତୁମେ ପିଲାଲୋକ ।"

ଦୋକାନୀ ତାକୁ ବାରମ୍ବାର ପିଲଲୋକ କହିବାଟାକୁ ବାବୁନ ମୋଟେ ପସନ୍ଦ କରିପାରୁ ନ ଥିଲା । ସିଏ ଏଥର ପଞ୍ଚମରୁ ଷଷ୍ଠ ଷ୍ଟାଣ୍ଡାର୍ଡ଼କୁ ପ୍ରମୋଶନ୍ ପାଇଛି । ପୁଣି ପୋଜିସନ୍ ବି ତା'ର ଦ୍ୱିତୀୟ । ସେ 'ପିଲ' ହେବ କାହିଁକି ? ପୁଣି ସେଇ ଦୋକାନୀର ଢ଼ିଲା ଖାକି ହାଫପ୍ୟାଣ୍ଟ୍, ମଇଳା ହାତକଟା ଗେଞ୍ଜି, ପାନଖିଆ କଳା ଦାନ୍ତରେ ବେଢ଼ଙ୍ଗିଆ ହସ······ସବୁ ମିଶି ବାବୁନକୁ ଭାରି ବିରକ୍ତ ଲାଗିଲା । କିନ୍ତୁ ବଜାରଟାରେ ତ ଆଉ ନିଜର ବିରକ୍ତି ପ୍ରକାଶ କରି ହେବ ନାହିଁ, ହେବା ବି ଉଚିତ ନୁହେଁ । ତେଣୁ ବାବାଙ୍କ ପରି ଗମ୍ଭୀର ହେବାକୁ ଚେଷ୍ଟା କରି ବାବୁନ କହିଲା—"ନା, ମୋର ଦାମିକା ଭଲ କଲମଟିଏ ଦରକାର । ତୁମ ପାଖରେ କ'ଣ ଭଲ କଲମ ଅଛି ଦେଖାଅ ।"

ତଥାପି ଦୋକାନୀ କୁଣ୍ଠିତ ହୋଇ କହିଲା—"ଦେଖାଇବି ସେ—ମୋ ପାଖରେ ଖୁବ୍ ଭଲ କଲମ ଅଛି । ତେବେ ତୁମର ଭଲ କଲମ ଦରକାର ନା ଦାମିକା କଲମ ଦରକାର ? ଆଉ ତା ଛଡ଼ା ତୁମ ପାଖରେ କେତେ ପଇସା ଅଛି ଜାଣିଲେ ସିନା······ ।"

ବାବୁନ ଅଧିକ ଗମ୍ଭୀର ହୋଇ କହିଲା—"ତୁମ ପାଖରେ କ'ଣ ଦାମିକା କଲମ ଅଛି ଦେଖାଉନ । ମୁଁ ଭଲ ଦାମିକା କଲମଟାଏ କିଣିବି ବୋଲି ଭାବୁଛି—ଅ,ଉ···ପଇସା ! ମୋ ପାଖରେ ଏବେ ପଇସା ନାହିଁ । ତେବେ ଘରେ ପଇସା ଅଛି ।"

ଦୋକାନୀ କେମିତି ଗୋଟେ ବିଚିତ୍ର ଦୃଷ୍ଟି ନେଇ ବାବୁନକୁ ଚାହିଁଲା । ତାକୁ ଲାଗିଲା ପିଲଟି ଛୋଟ ହେଲେ କ'ଣ ହେବ ବେଶ୍ ବୁଦ୍ଧିଆ ଚତୁର । ସେ ବସିଲା ଜାଗାରୁ ଉଠିପଡ଼ି ଜଣେ ଗରାଖକୁ ସନ୍ତୁଷ୍ଟ କରିବା ଭଙ୍ଗୀରେ ଆଲମାରୀ ଖୋଲି ଗୁଡ଼ାଏ ଭଲ ଭଲ ଆଉ ଦାମିକା କଲମ ଆଣି ଟେବୁଲ ଉପରେ ରଖିଲା । ବେଶ ଉତ୍ସୁକତାର ସହିତ ବାବୁନ ଗୋଟିଏ ପରେ ଗୋଟିଏ କଲମ ଦେଖି ବୁଲଥାଏ ଓ ତାର ଦାମ୍ ପଚାରି ବୁଲଥାଏ । ଦୋକାନୀ ବି ଚଟାପଟ୍ ଉତ୍ତର ଦେଉଥାଏ । ତା ଭିତରୁ ଗୋଟିଏ କଲମ ବାବୁନର ଭାରି ପସନ୍ଦ ହେଲା । ଦୋକାନୀକୁ ପଚାରି ବୁଝିଲା—ତାର ଦାମ୍ ବାଇଶଟଙ୍କା । ବାଇଶଟଙ୍କା ମୋଟେ !

"ଆଚ୍ଛା ! ସ୍ୱା'ଠାରୁ ବେଶୀ ଦାମିକା କଲମ ତୁମ ପାଖରେ ଅଛି ?" ବାବୁନ ପଚାରିଲା ।

ଦୋକାନୀ ଚଟ୍‌କନା ଉଠିଯାଇ ଆଲ୍‌ମିରା ଭିତରୁ ଆଉ ଗୋଟେ କଲମ କାଢ଼ି ଆଣିଲା । କଣ୍ଠରେ ଈଷତ୍ ବିରକ୍ତି ମିଶାଇ କହିଲା—"ଏଇଟା ହେଉଛି ସବୁଠୁଁ ଦାମୀ କଲମ । ସ୍ୱା' ଠାରୁ ବେଶୀ ଦାମୀ କଲମ ଏ ସହରରେ ମିଳେ ନାହିଁ । ସ୍ୱା'ଠୁଁ ଯଦି ବେଶୀ ଦାମୀ କଲମ ତୁମର ଦରକାର ଛୁଆବାବୁ, ତେବେ କଲିକତା କି ବମ୍ବେଇ ସହରକୁ ଯିବାକୁ ପଡ଼ିବ । ବୁଝିଲଟି—?"

ନିଜର ଗାମ୍ଭୀର୍ଯ୍ୟକୁ ଯଥାସମ୍ଭବ ବଜାୟ ରଖି ବାବୁନ କହିଲା—"ଏଇ କଲମଟାଇ ମୋର ପସନ୍ଦ । ସ୍ୱା'ର ଦାମ୍ କେତେ ?"

କେମିତି ଗୋଟେ ଫୋପାଡ଼ିଲା ପରି ଦୋକାନୀ କହିଲା—"ଦାମ୍ ବେଶୀ ନୁହେଁ ମ ଛୁଆବାବୁ, ଏଇ ମୋଟେ ଛଅସ୍ତରୀ ଟଙ୍କା ।"

"ଛଅସ୍ତରୀ ଟଙ୍କା !" ଏତେବେଳକୁ ବାବୁନ ବୁଝିପାରିଲା ଯେ ତାଙ୍କ ଜମେଇଥିବା ପାଣ୍ଠିରେ ବୋଧେ ଏତେ ଟଙ୍କା ହୋଇ ନ ଥିବ । ଗୁଣ୍ଡ ଗୁଣ୍ଡ ହୋଇ ସେ କହିଲା—"ଛଅସ୍ତରୀ ଟଙ୍କା—" । ଦୋକାନୀ ବି ଦୋହରେଇଲା—"ଛଅସ୍ତରୀ ଟଙ୍କା ।"

ଠିକ୍ ଏତିକବେଳକୁ ବାବୁନର ବାବା ଦୋକାନ ପିଣ୍ଡାକୁ ଉଠି-ଆସିଲେ, ହାତରେ ପରିବାବୋଝେଇ ଥଳିଟାଏ ଧରି । ଦୋକାନୀ ତାଙ୍କୁ ଦେଖି ନମସ୍କାର କଲା ଅତି ସମ୍ଭ୍ରମରେ ।

ବାବା କହିଲେ—"କଣ ଶ୍ରୈଧୁରୀଏ ! କି ବେପାର ଆରମ୍ଭ କରିଛ ପୁଅ ସାଥିରେ । ଏଁ—ଛଅସ୍ତରୀ ଟଙ୍କା କ'ଣ ?"

ଶ୍ରୈଧୁରୀ କହିଲା—"ନାଇଁ ଆଜ୍ଞା ! ଛୁଆବାବୁ ଆମର କଲମ ଦେଖୁଥିଲେ ଯେ—"

ବାବୁନ ବାବାଙ୍କ ପାଖରେ ଘଷି ହୋଇ ଛିଡ଼ା ହୋଇ ସବୁ ଶୁଣୁଥିଲା । କହିଲା—ବାବା ! ଏଇ କଲମଟା ଭାରି ଭଲ ହୋଇନ ? ଦାମ୍ କହୁଛି ଛଅସ୍ତରୀ ଟଙ୍କା—ମାନେ ସେଭେଣ୍ଟି ସିକ୍ସ୍ ରୁପିଜ୍, ନା—।"ବାବାଙ୍କ ହସିଲା ମୁହଁ ହଠାତ୍ ଗମ୍ଭୀର ହୋଇଉଠିଲା । ସିଏ ଖାଲି କହିଲେ—"ହୁଁ !"

ବାବୁନର ଏତେ ଉତ୍ତେଜନା, ଏତେ ବ୍ୟଗ୍ରତା ସବୁ ଯେପରି ଫସର୍ ଫାଟିଗଲା । ସେ ବାବାଙ୍କ ମୁହଁକୁ ଚାହିଁ ଦେଖିଲା, କଲମ କଥା ପଡ଼ିଲେ ଘରେ ବାବା ଯେମିତି ଗମ୍ଭୀର ଦେଖାଯାନ୍ତି, ଠିକ୍ ସେମିତି ଦେଖାଯାଉଛି ତାଙ୍କ ମୁହଁଟା ।

ବାବାଙ୍କ ହାତ ଧରି ବାବୁନ ରାସ୍ତା ଉପରକୁ ଓହ୍ଲାଇ ଆସିଲା । ତାକୁ ଏତେ ଅଖାଡ଼ୁଆ ଲାଗୁଥାଏ ଯେ ସେ ଦୋକାନୀ ଆଡ଼େ ଆଉ ଜମା ଚାହିଁଲା ବି ନାହିଁ । ବାଟସାରା ବାବୁନ ସବୁଦିନ ପରି ବାବାଙ୍କୁ କଣ୍ଛି ପ୍ରଶ୍ନ ପଚାରି ନାହିଁ । ବାବା ବି ଭାରି ଅନ୍ୟମନସ୍କ ଜଣାପଡ଼ୁଥାନ୍ତି । ଅବଶ୍ୟ "ରାସ୍ତାର ବାମପଟେ ଚାଲିବା ଉଚିତ"—ଏ କଥାଟି ବାବୁନ ଭୁଲି ନ ଥିଲା । ଘରେ ପହଞ୍ଚି ବାବୁନ ଅପାମାନଙ୍କ ଆଗରେ ତା ଯୋଜନା କଥା ଯେତେବେଳେ କହିଲା, ସମସ୍ତେ କଥାଟାକୁ ବେଶ୍ ପସନ୍ଦ କଲେ । ବାବା ଙ୍କ ମାମା ସବୁବେଳେ ପିଲାମାନଙ୍କ ଜନ୍ମଦିନରେ ଉପହାର ଦେଉଥିବେ, ଆଉ ବାବା ଙ୍କ ମାମାଙ୍କ ଜନ୍ମଦିନରେ ପିଲାମାନେ ଉପହାର ଦେବାରେ ଭୁଲ ରହିବ କାହିଁକି ? କିନ୍ତୁ ଅସଲ ସମସ୍ୟା ହେଲା ଏତେ ଟଙ୍କା ଆସିବ କୁଆଡ଼ୁ । ସେମାନେ ଯେଉଁ 'କର୍ତ୍ତବ୍ୟାଙ୍କ୍' ବୋଲି ଟିଣ ଡିଆରି ଡବାଟିରେ ପଇସା ଜମାନ୍ତି, ସେଟା ଖୋଲି ଦେଖିବାରୁ ଦେଖାଗଲା ଯେ ସର୍ବମୋଟ ଅଛି ତେତିଶ ଟଙ୍କା ଷାଠିଏ ପଇସା । କଲମଟାର ଦାମ ତ ଛଅସ୍ତରି ଟଙ୍କା । କାଗଜ କଲମ ଧରି ବାବୁନ ଓ ତାର ଉପର ଭଉଣୀ ପିଙ୍କୁନ ହିସାବ କରିବାରେ ଲାଗିପଡ଼ିଲେ । ତେବେ ଦେଖାଗଲା ଆହୁରି ବୟାଳିଶ ଟଙ୍କା ଚାଳିଶ ପଇସା ନିଅଣ୍ଟ ପଡ଼ୁଛି । ପିଙ୍କୁନ ହିସାବ କରି କହିଲା— "ବାବାଙ୍କ ଜନ୍ମଦିନ ଆହୁରି ପ୍ରାୟ ମାସେ ଅଛି । ଏହି ମାସ ଭିତରେ ଆମ କାଗଜ ବାବଦରେ ଖୁବ୍ ବେଶି ହେଲେ ନଅ ଟଙ୍କା ପାଇବା । ବାକି ରହିଲା ତେତିଶି ଟଙ୍କା ପ୍ରାୟ । ସେତକ କୁଆଡ଼ୁ ଆସିବ ଯେ !"

ବାବୁନ କହିଲା—"ଆମକୁ ସନ୍ଧ ଆଉ ପିଲାଙ୍କ ପରି ଟିଫିନ୍ ପାଇଁ ପଇସା ଦିଅନ୍ତେ ତେବେ କେଜାଣି ହୋଇପାରନ୍ତା ପରା । କିନ୍ତୁ...ଆମେ ତ ଜାଣୁ ବାହାର ଜିନିଷ ଦେହ ପକ୍ଷରେ ଖରାପ, ତେଣୁ ଆମେ ଘରୁ ଟିଫିନ୍ ନେଇଯାଉଛୁ ।"

ବାବୁନର ସବା ବଡ଼ ଭଉଣୀ ଟିଠୁନ ଏଥର ନବମ ଷ୍ଟାଣ୍ଡାର୍ଡ଼କୁ ପ୍ରମୋସନ ପାଇଛି । ସେ ଭାବେ, ସେ ସାଙ୍ଗମାନଙ୍କ ବଡ଼ ମଣିଷ ଅନ୍ତତଃ ଏଇ ଦୁଇଜଣଙ୍କ ତୁଳନାରେ ତ ନିଶ୍ଚୟ । ସିଏ ଟିକିଏ ଚିନ୍ତା କରି ପରି ହୋଇ କହିଲା—"ଆରେ ତମେ ସବୁ ଗୋଟିଏ କଥା ଭୁଲି ଯାଉଛ । ଦୋକାନୀ ଯାହା ଦାମ୍ କହେ ସେ କଣ ତା ନିଏ ? ତା ସହିତ ଆମେ ବାରଗେନ୍ କରିପାରିଲେ······ଅବଶ୍ୟ ଛଅସ୍ତରି ଟଙ୍କାର କଲମଟା ବୟାଳିଶ ଟଙ୍କାରେ ଦେବାକୁ ସେ ରାଜିହେବ କି ନାହିଁ ସେଇଟା ବି ଭାବିବାର କଥା ।" ମୁହଁ ଛୁଆଁଇ ପିକୁନ କହିଲା—"ରଖ୍ ତୋ ହିସାବ । ମତେ ଭାରି ଶଢ଼ ମାଡ଼ୁଛି । ସବୁବେଳେ ଖାଲି ଗଣିତ । ଏବେ କଣ କରିବା ଯେ—"

ଠିକ୍ ଏତିକିବେଳେ ଧପ୍‌ଧପ୍ କରି ସିଢ଼ି ଉପରେ ମାମାଙ୍କ ପାଦ ଶବ୍ଦ ଶୁଭିଲା । ପଢ଼ା ଘରେ ବସିଥାଏ ପିଲାଙ୍କର ଏଇ ମଜ୍‌ଲିସ୍ । ମାମା ଆସି ସେଠି ପହଞ୍ଚିଗଲେ । ହୋ ହୋ କରି ସବୁ ପିଲା ମାମାଙ୍କୁ ଘେରିଗଲେ । ସବୁ ଶୁଣି ମାମା କହିଲେ, "ଭାରି ଭଲ ଯୋଜନାଟାଏ କରିଛ ଯେ··ମନେରଖ, ଭଲ ଭାବରେ ଯୋଜନା କରିଥିଲେ କାମ ଠିକ୍ ବାଟରେ ବଳେ ବଳେ ହୋଇଯିବ । ତେବେ ଏତେ ଅଧୀର ହେଉଛ କାହିଁକି ? ଆହୁରି ତ ମାସେ ଖଣ୍ଡେ ଅଛି । ମୁଁ ତୁମକୁ ନିଜେ ସେଇ ଦୋକାନକୁ ନେଇଯିବି । ଦୋକାନୀ ତ ବାପାଙ୍କ ଚିହ୍ନା । ସିଏ କିଛି ଦାମ୍ କମାଇଦବ ଯେ ।"

ଦେଖୁ ଦେଖୁ ବାବାଙ୍କ ଜନ୍ମଦିନ ପାଖେଇ ଆସିଲା । ସେପ୍‌ଟେମ୍ବର ପହିଲା ତାରିଖ ଦିନ ମାମା ସଞ୍ଜବେଳେ ଟିଠୁନକୁ ଡାକି କହିଲେ—"ତୁମ କାଡ଼ବ୍ୟାଙ୍କ ଖୋଲ । କେତେ ପଇସା ହେଲା ଦେଖିବା ।" ବାବୁନ ଧାଇଁଯାଇ କାଡ଼ବ୍ୟାଙ୍କ ନେଇ ଆସିଲା । ଖୋଲିକରି ପଇସା ଗଣା କାମଟା ପିକୁନର; ଏଁ—ଇଏ କେମିତି କଥା—ସବୁ ମିଶି ତେଷଠି ଟଙ୍କା—ଏତେ ଟଙ୍କା କେମିତି ହେଲା ଯେ ! ଟିଠୁନ ରାଗିଯାଇ ପାଟିକଲା—"ଯାଃ ! ବୋକାଟାଏ ! ତୋତେ ଗଣିଆସେ ନା । ଆଣ୍ ମତେ ଦେ—" କିନ୍ତୁ ପୁଣିଥରେ ଗଣିଲେ ବି ଠିକ୍ ସେତିକି ହେଲା—ତେଷଠି ଟଙ୍କା । ଆଶ୍ଚର୍ଯ୍ୟ କଥା ! ଏ ମାସରେ ବାବା ବି ହଠାତ୍ ଗୁଡ଼ାଏ ଖବରକାଗଜ କିଣିଛନ୍ତି । କିନ୍ତୁ······ଏତେ ଟଙ୍କା କେମିତି ହେଲା ଯେ······

ମାମା ଟେଣେ ଡାଗିଦା କଲେ—"କରେ ଗ୍ଭଲ । ଆଉ ଡେର କଲେ ଦୋକାନ ପଗ ଟେଣେ ବନ୍ଦ ହୋଇଯିବ । ଏତେ ଟଙ୍କା କେମିତି ହେଲ ଭାବୁଛଟି ? ସେକଥା ଵସ୍ତୁର ଆଲୋଚନା ପାଇଁ ବହୁତ ସମୟ ମିଳବ ଯେ···ଏବେ ଗ୍ଭଲ ।"

ଚୌଧୁରୀ ଏମ୍ପୋରିୟମରେ ବାବୁନ ପାଇଁ ଅନ୍ୟ ଏକ ଆଶ୍ଚର୍ଯ୍ୟ ଘଟଣା ଯେମିତି ଅପେକ୍ଷା କରଥିଲ । ତାକୁ ଦେଖିଲମାତ୍ରେ ଦୋକାନୀ ହସି ହସି ସତେ ଯେମିତି ପାଗ୍ରେଟି ନେଲ—"କ ଚ୍ଛୁଆବାବୁ ! କଣ ସେଇ ଦାମୀ କଲମଟା କଣିବ ? ଆଃ—ଆଜ ମୋର ବଡ଼ ଭାଗ୍ୟ । ମା' ବ ନଜେ ଆସିଛନ୍ତ । ରୁହ ବାବୁ, ହେଇଟି ପଗ ତୁମ ପାଇଁ କଲମଟା ମୁଁ ସାଇତ ରଖିଛୁ । ଅନ୍ୟ କାହାରକୁ ବକଦେଇ ନାହିଁ ।"



କଲମଟା ଦେଖିସାର ମାମା ପଗ୍ଭରଲେ—"ଦାମ୍ କଣ ସେଇ ଛଅସ୍ତୁରୀ ଟଙ୍କା ନା ଆଉ କଛି···?" ହସି ହସି ଦୋକାନୀ କହିଲ—"ନା

ନା, ଆମ ଛୁଆବାବୁଙ୍କ ପାଖରେ କେତେ ଟଙ୍କା ଅଛି ଯେ—ବୋଧେ ତେଷଠି ଟଙ୍କା ନା—ଚଳିବ—ଚଳିବ—ମୁଁ ଆମ ଛୁଆବାବୁଙ୍କୁ ବାକି ପଇସା କମିସନ ଦେଇଦେବି । ସେତିକି ଦିଅ ।"

ତାପରର ଘଟଣା ଖୁବ୍ ସଂକ୍ଷିପ୍ତ ଓ ଆନନ୍ଦଦାୟକ । ବାବାଙ୍କ ଜନ୍ମଦିନରେ ସେଇ କଲମଟି ତାଙ୍କୁ ପ୍ରେଜେଣ୍ଟ କରାଗଲାବେଳେ ବାବାଙ୍କ ମୁଁହ ଖୁସିରେ ଉଜଳି ଉଠିଲା । ଖୁସିରେ ସେ ଘୋଷଣା କଲେ, "ଏଇ କଲମରେ ମୁଁ ପିଲାଙ୍କ ପାଇଁ କେତେଟା ବଢ଼ିଆ ଗପ ଲେଖିବି"—ଏବଂ ତାଙ୍କ କଥା ବି ସେ ଠିକ୍ ରକ୍ଷାକଲେ । ବର୍ଷକ ଭିତରେ ଛୋଟ ପିଲାଙ୍କ ପାଇଁ ବାବାଙ୍କର ଲେଖା ଗପବହିଟିଏ ବାହାରିଲା ଯାହାର ନାମ ହେଲା "ଫୁଲଝରି" । ବହି ଥାକରେ ସେ ବହିଟି ସବା ଆଗରେ ସମସ୍ତେ ଦେଖି-ପାରିଲା ଭଳି ଥୁଆ ହୋଇଛି । ଆଉ ସବୁଠାରୁ ବଡ଼କଥା ହେଉଛି ବହିଟି ବାବୁନ, ପିକୁନ ଓ ଟିଟୁନ ନାମରେ ଉତ୍ସର୍ଗ କରାହୋଇଛି । ସବୁ ହେଲା । ସବୁ ଭଲ ହେଲା । କିନ୍ତୁ ବାବୁନ କେତୋଟି ପ୍ରଶ୍ନର ଉତ୍ତର ଆଜଯାଏ ପାଇପାରି ନାହିଁ—

(ଏକ) ହଠାତ୍ ବ୍ୟାଙ୍କ୍‌ରେ ଏତେ ପଇସା ଆସିଲା କୁଆଡ଼ୁ ? ତେବେ କଣ ମୂଳରୁ ତାଙ୍କର ଗଣିବାରେ ଭୁଲ୍ ହୋଇଯାଇଥିଲା ? କିନ୍ତୁ··· ବାବୁନ ତ ସବୁବେଳେ ଗଣିତରେ ଅଶୀରୁ ଅଧିକ ନମ୍ବର ରଖେ—ତା'ର କଣ ଗଣିତରେ ଭୁଲ ହୋଇପାରେ ?

(ଦୁଇ) ଦୋକାନୀଟା କେମିତି ଜାଣିଲା ଏମାନଙ୍କ ପାଖରେ ତେଷଠୀ ଟଙ୍କା ଅଛି ବୋଲି ?

(ତିନି) ଯେଉଁ ଦୋକାନୀକୁ ସେ 'ମାର୍ଚେଣ୍ଟ ଅଫ୍ ଭେନିସ'ର ଶାଇଲକ୍ ବୋଲି ଭାବିଥିଲା, ସେ ହଠାତ୍ ଏତେ ଟଙ୍କା ଛାଡ଼ିଦେଲା କେମିତି ?

(ଚାରି) କଲମ କିଣିବା କଥା କହିଲେ ବାବା ଖୁବ୍ ଗମ୍ଭୀର ହୋଇଯାଉଥିଲେ କାହିଁକି ? ଏଇ କଲମଟା ପ୍ରେଜେଣ୍ଟ କଲାବେଳେ ବାବା ଭାରି ଖୁସି ହୋଇଗଲେ କେମିତି ?

ଏଇ ସବୁ ପ୍ରଶ୍ନର ଉତ୍ତର ବାବୁନ ଜମା ଭାବିପାରେ ନାହିଁ । ତୁମେ ସବୁ ତାକୁ ଟିକେ ସାହାଯ୍ୟ କରିବ କି ?




ଝିପିଝିପି ମେଘ ଅସରାଏ ବର୍ଷିଯାଇଛି ।

ଝପଡ଼ା ରାସ୍ତାରେ ପାଦ ଚପିଚପି ଆସି ପୁପୁ ଯେତେବେଳେ ବସ୍‌ଷ୍ଟାଣ୍ଡ୍‌ରେ ପହଂଚିଲା, ସେତେବେଳେ ସେ ଦେଖିଲା ଯେ ରାମନଗରକୁ ଶେଷ ବସ୍‌ଟା ଛାଡ଼ି ଦେଇଛି । ଅଜ ଆଉ ଗୁଲିଗୁଲି ନ ଗଲେ ସେଠାକୁ ଯିବାର କୌଣସି ଉପାୟ ନାହିଁ । ଏହା ଦେଖି ପୁପୁର ମୁଁହଟା ଶୁଖିଗଲା । କଣ ସେ କରିବ କିଛି ଭାବିପାରିଲା ନାହିଁ ।

ତେଣେ ରାମନଗର ଡାକ୍ତରଖାନାରେ ବାପା ତାର ମରଣ ସାଥିରେ ଲଢ଼ୁଛି । ତିନିଦିନ ତଳେ ରାତିରେ ଦଳେ ଡକାୟତ ସେମାନଙ୍କ ଘରେ କବାଟ ଭାଙ୍ଗି ପଶିଲେ । ପଇସା ଲୋଭରେ ନୁହେଁ, ପୁପୁର ବାପା ଆଗରୁ ଗୋଟିଏ ମକଦ୍ଦମାରେ ସାକ୍ଷୀ ହୋଇ ଡକାୟତମାନଙ୍କୁ ଦଣ୍ଡିତ କରାଇ ଦେଇଥିଲେ । କେତେବର୍ଷ ଜେଲ୍ ଖଟିବାପରେ ସେମାନେ ପୁଣି ଫେରି

ଆସିଲେ । ଡକାୟୂତମାନେ ସେହି ସଗରେ ଘରେ ପଶି ତାର ବାପାଙ୍କୁ ଛୁରୀ ଭୁଷିଦେଲେ ଓ ନିଆଁ ଲଗାଇଦେଲେ । ପିଲଟିକୁ ପୁପୁ ମା ଛେଉଣ୍ଡ । ଏସବୁ ଅଘଟଣ ସେ ତାର ନିଜ ଆଖିରେ ଦେଖିଲା । ତାଙ୍କର କରୁଣ ଚିତ୍କାର ଶୁଣି ଯେତେବେଳେ ଗାଆଁ ଲୋକସବୁ ଦଉଡ଼ି ଆସିଲେ, ବୋମା ଫୁଟାଇ ସେମାନଙ୍କୁ ଡକାୟୂତମାନେ ଘଉଡ଼ାଇ ଦେଲେ । ଜୀବନ ଭୟରେ କେହି ପାଖ ପଶିପାରିଲେ ନାହିଁ । ହୁତୁହୁତୁ ନିଆଁରେ ତାଙ୍କର ସବୁ ଜଳିପୋଡ଼ି ପାଉଁଶ ହୋଇଗଲା ।

ଡକାୟୂତମାନଙ୍କ ଛୁରୀମାଡରେ ଦରମରା ହୋଇ ପଡ଼ିଥିବା ତାର ବାପା ତାପରେ ଘୁଷୁରି ଘୁଷୁରି ଆସି ବାହାରେ ପଡ଼ିରହିଲା । ପାଖରେ ଛିଡ଼ା ହୋଇ ପନ୍ଦର ବର୍ଷର ପୁଅ ପୁପୁ ବରଡ଼ାପତ୍ର ପରି ଭୟରେ ଥରୁଥାଏ । ନିଆଁ ଲିଭିଗଲା । ଡକାୟୂତମାନେ ତ ଆଗରୁ ପ୍ରତିଶୋଧ ନେଇ ଚାଲି-ଯାଇଥିଲେ । ଗାଆଁ ଲୋକେ ରକ୍ତ ଜୁଡ଼ୁବୁଡ଼ୁ ତାର ବାପାଙ୍କୁ ଗାଡ଼ାଗାଡ଼ି ଶଗଡ଼ରେ ଡାକ୍ତରଖାନା ବୋହି ଆଣିଲେ । ପୁପୁ ବି ବାପାଙ୍କ ସାଂଗରେ ଡାକ୍ତରଖାନା ଗଲା ।

ବାପାଙ୍କୁ ରକ୍ତ ଦେବାକୁ ଦରକାର ପଡ଼ିବାରୁ ପୁପୁ ଫେରି ଆସିଲା ଗାଆଁକୁ । ଟଙ୍କା ଲୋଡ଼ା । ଗତକାଲି ଡାକ୍ତରଖାନାକୁ ସରପଞ୍ଚବାବୁ ତା ବାପାଙ୍କୁ ଦେଖିବାକୁ ଯାଇଥିଲେ । ଫେରିଲାବେଳେ କେତୋଟି ଟଙ୍କା ତାକୁ ଧରାଇ ଦେଇ ଆସିଥିଲେ ସେ । ସେତିକରେ କଣ ଦରମରା ମଣିଷ ପାଇଁ ରକ୍ତ କିଣିହୁଏ ! ପୁପୁ ତେଣୁ ଗାଆଁକୁ ଫେରି ସରପଞ୍ଚ ବାବୁଙ୍କୁ ଭେଟିଲା । କିଛି ଟଙ୍କା ତାକୁ ସାହାଯ୍ୟ କରିବା ପାଇଁ ସେ ନେହୁରା ହେଲା । ସରପଞ୍ଚ-ବାବୁ ଖାଲି ହାତରେ ଟଙ୍କା ଦେବାକୁ ମଂଗିଲେ ନାହିଁ । ଡାକ୍ତରଖାନା ଯାଇ ସେ ଥୋପ ପକାଇଦେଇ ଆସିଥିଲେ । ବଡ଼ ମାଛ ବଳେବଳେ ଗିଳୁଛି । ସେ ତାକୁ ନ ଧରି କଣ ପୁଣି ପାଣିରେ ଛାଡ଼ିଦେବେ ?

ସରପଞ୍ଚବାବୁଙ୍କର ଛମାଣିଆ ଚକ ଜମିକୁ ଲଗି ପୁପୁ ବାପାଙ୍କର ଉଦବାଡ଼ି । ଦଶବାରଟା ନଡ଼ିଆ ଗଛ ଅଛି । ମାଛ ରହୁଥିବା ଖରାପିଠିଆ ପୋଖରୀଟାଏ । ଫସଲକଟା ପରେ ଅମଳ କରିବାବେଳେ ପୁପୁଙ୍କ ବାଡ଼ି ଆମ୍ବଗଛମୂଳେ ସରପଞ୍ଚଙ୍କ ଧାନଗଦା ବସେ । ଏବେ କେତୋଟି ଟଙ୍କା

ପକାଇ ଦେଲେ ସେ ଉଦବାଡ଼ଟା ହାତପଇଠ ହେବ । ଏହା ଭାବ ସରପଞ୍ଚ-ବାବୁ ଟଙ୍କା ଭିନଶ ଦେଲେ । ପୁପୁର ବାପା ଭଲ ହେଉ କି ନ ହେଉ ଜମିଟା ଏଥର ତାଙ୍କର ହେଲା ବୋଲି ସେ ଧରିନେଲେ ।

ଅସରାଏ ଖରା ପରେ ଚଇତର ଖରଖିଆ ମାଟିରୁ ମିଠା ମିଠା ବାସ୍ନା ବାହାରୁଛି । ରାମନଗରକୁ ରାତିରେ ବସ୍ ନାହିଁ । ଆଜି ରାତରେ ବାପାଙ୍କୁ ଯେ କୌଣସି ମତେ ରକ୍ତ ଦେବାକୁ ପଡ଼ିବ । କଣ କରିବ ସେ ? ପୁପୁ ନିରାଶ ହେଲା । ତାର କଅଁଳ ଛାତିଟା ବିପଦର ଆଶଙ୍କାରେ ଖୁବ୍ ଜୋର୍‌ରେ ଉଠ୍‌ପଡ଼୍ ହେବାକୁ ଲାଗିଲା । ଚାରିଆଡ଼କୁ ଚାହିଁଲା ସେ, ହେଲେ ତାକୁ ଆଉ କିଛି ବୁଦ୍ଧିବାଟ ଦିଶିଲା ନାହିଁ ।

ଏତିକବେଳେ ତା ମୁହଁ ଉପରେ ଝଲକାଏ ଆଲୁଅ ଆସି ପଡ଼ିଲା । ମଟରର ଗାଡ଼ିର ଶବ୍ଦ ବି ସେ ସ୍ପଷ୍ଟ ଶୁଣି ପାରିଲା । କେତେ ମିନଟ୍ ପରେ ସେ ଦେଖିଲା ଯେ ଜଣେ ଲୋକ ଗାଡ଼ିରେ ବସି ଗାଡ଼ି ଚଳାଉଛନ୍ତି । ଗାଡ଼ିଟା ତା'ଆଡ଼େ ଛୁଟିଆସୁଛି ।

ପୁପୁ ରାସ୍ତାକଡ଼କୁ ଦୁଇପାଇ ଡିଁକମାରି ଚାହିଁବାରୁ ଗାଡ଼ି ଭିତରେ ବସିଥିବା ଲୋକଜଣକୁ ଚିହ୍ନି ପାରିଲା । ଗାଡ଼ି ଚଳାଉଥିବା ଲୋକଜଣକ ଡାକ୍ତର । ରାମନଗର ଡାକ୍ତରଖାନାର ବଡ଼ ଡାକ୍ତର ସେ । ଘର ତାଙ୍କର ଓଡ଼ିଶା ବାହାରେ । ଅନେକ ଦିନ ହେଲା ସେ ରାମନଗରରେ ଅଛନ୍ତି । ସନ୍ଧ୍ୟାବେଳେ ଘରୋଇଭାବରେ ରୋଗୀ ଦେଖିବାପାଇଁ ସେ ବସା ଛାଡ଼ି ଦୂରଦୂରାନ୍ତକୁ ବାହାରିଯାଆନ୍ତି । ଡାକ୍ତର ହିସାବରେ ତାଙ୍କର ଭଲ ନାଆଁ ଅଛି । ମଲା ଲୋକକୁ ସେ ବଂଚେଇଦେଇ ପାରନ୍ତି । ହେଲେ ଭାରି କୃପଣ । ପଇସାଟାଏ ଛାଡ଼ିବେ ନାହିଁ । ଟଙ୍କା ନ ମିଳିଲେ ରୋଗୀ ମରୁ ଅବା ବଞ୍ଚୁ ସେଥିକୁ ତାଙ୍କର ଜମା ପରବାଏ ନାହିଁ ।

ମଟରଗାଡ଼ି ପାଖେଇ ଆସିବାରୁ ପୁପୁ ହାତ ଟେକିଲା । ଗାଡ଼ି ଅଟକିଗଲା । ତାର ଦୁଃଖସବୁ ଖୋଲି କହିଲା ପୁପୁ ଡାକ୍ତରବାବୁଙ୍କୁ । କେବଳ ତାକୁ ଗାଡ଼ିରେ ଉଠାଇ ନେଇ ରାମନଗର ଡାକ୍ତରଖାନାରେ ପହଞ୍ଚାଇଦେବାକୁ ସେ ତାଙ୍କୁ କାକୁତିମିନତି ହେଲା । ଡାକ୍ତରବାବୁ ମଧ୍ୟ ସେହି ବାଟରେ ଗାଡ଼ି ନେବେ । ହେଲେ ପୁପୁର କଥା ରଖିଲେ ନାହିଁ ।

ଡାକ୍ତରବାବୁ ତାକୁ ନ ନେବାକୁ ସେକ୍‌ଠୋକ୍ ମନା କରିଦେଇ ଗାଡ଼ି ଆଗକୁ ଛୁଟାଇଦେଲେ ।



ପୁପୁ ବା କଣ ଆଉ କରିବ ? ଟିକିଏ ଯାହା ଆଶା ଥିଲା, ତାହା ବି ଗଲା ।

ବସ୍‌ଷ୍ଟାଣ୍ଡ୍‌ରୁ ରାମନଗର ପନ୍ଦର କିଲୋମିଟର ବାଟ ।

ପାହାଡ଼ିଆ ରାସ୍ତା । ଖରାବଦନିଆ ନଗ୍ଛଟିଆ ସେଇ ରାସ୍ତାରେ ପୁଣି ସାପ ଓ ଜଙ୍ଗଲୀ ଜନ୍ତୁମାନଙ୍କର ଭୟ ଅଛି । ଏଣେ ମୁହଁସଞ୍ଜ ହୋଇ ଆସିଲାଣି । ନ ଗଲେ ନ ଚଳେ । ବାପାଙ୍କର ରକ୍ତ କିଣିବାପାଇଁ ଡାକ୍ତରବାବୁଙ୍କୁ ପଇସା ଦେବାକୁ ପଡ଼ିବ । ତେଣୁ ସକାଳ ବସ୍‌କୁ ଅପେକ୍ଷା ନ କରି ପୁପୁ ସେହି ବାଟରେ ଚାଲି ଚାଲି ଆଗେଇଲା । ବାପାଙ୍କୁ ବଞ୍ଚାଇବା କଥା ଭାବିବାକ୍ଷଣି ତାକୁ ଭୋକଶୋଷ ଲାଗିଲା ନାହିଁ । ମନରୁ ସବୁ କିଛି ଭୟ ତାର ଦୂର ହୋଇଗଲା ।

ରାତି ଦିଘଡ଼ି ଆଉଣ୍ଟ ତା'ପର ଦିନ ପୁପୁ ଯେତେବେଳେ ଡାକ୍ତର-ଖାନରେ ପହଂଚିଗଲା, ସେତେବେଳେ ସେ ପୂରା ଥକି ଯାଇଥାଏ । ବାଟରେ ଗୋଟିଏ ଦୋକାନରେ ସେ ଯାହା କେତୋଟି ବରା ଖାଇଥିଲା । ପେଟରେ ଭାରି ଭୋକ । ଅଂଧାରିଆ ରାସ୍ତାରେ କେତେ ଜାଗାରେ ଝୁଣ୍ଟି ଆଣ୍ଠୁ ଗଣ୍ଠି ତାର ଖଣ୍ଡିଆ ହୋଇଯାଇଛି । ହେଲେ ପୁପୁ ଦବି ଯାଇନାହିଁ । ନୂଆ ବଳ ନେଇ ମନ ଜୋରରେ ସେ ଆଗେଇ ଯାଇଛି ।

ଡାକ୍ତରଖାନା ବାରନ୍ଦାରେ ହଠାତ୍ ତାକୁ ଦେଖି କେତେଜଣ ନର୍ସ ଓ ବେହେରାଙ୍କ କଥାବାର୍ତ୍ତା ବନ୍ଦ ହୋଇଗଲା । ଭୂତ ଦେଖିବା ଭଳି ସେମାନେ ଚମକି ପଡ଼ିଲେ । ରାତି ତଥାପି ପାହି ନଥାଏ । ସେହି ଜାଂଗୁଲ୍-ଜୁଂଗୁଲ୍ ଅଂଧାର ଭିତରେ କିଛି ଦୂରରେ ପୁପୁ ଦେଖିଲା ଯେ ଗୋଟିଏ ମୁର୍ଦ୍ଦାର ଦେହ ଉପରେ ସଫା ଚଦର ଖଣ୍ଡେ ଢାଙ୍କିଦିଆ ହୋଇ ଶୁଆଇ ଦିଆଯାଇଛି । ଘର ଭିତରକୁ ପଶି ଯାଇ ସେ ଦେଖିଲା ଯେ ତାର ବାପାଙ୍କ ଖଟିଆଟା ଖାଲି । ରସର ଥାଳିଗିନା ଓ ଆଉ କେତେଖଣ୍ଡ ଛିଣ୍ଡା ଲୁଗାପଟା ସେଇଠି ଖାଲି ପଡ଼ିଛି । ବେହେରାଟି ତାକୁ ଦେଖି କହିଲା—'ତୁମେ ବାବୁ, ସଂଜବେଳକୁ ଆସିବାକୁ କହି ଯାଇଥିଲ । ଆସି ପାରିଲ ନାହିଁ । ତେଣୁ ରକ୍ତ ଦିଆଯାଇ ପାରିଲା ନାହିଁ । ତୁମ ବାପା ମରିଗଲେ । ତାଙ୍କ ମୁର୍ଦ୍ଦାରଟା ବାରନ୍ଦାରେ ପଡ଼ିଛି । ପୋଡ଼ିବ ଯଦି ନିଅ ।'

ଏହା ଶୁଣି ପୁପୁ ଗଛ କାଟିଲା ପରି ତଳେ କଚାଡ଼ି ହୋଇପଡ଼ିଲା । ମୁଣ୍ଡ ପିଟି ହୋ ହୋ ହୋଇ କାନ୍ଦିଉଠିଲା ସେ । ତାପରେ ମୁର୍ଦ୍ଦାରଟାକୁ କୁଣ୍ଢାଇ ଧରି ସେ ଅଚେତ ହୋଇଗଲା ।

ତାର ଛାତିଫଟା ବିକଳ କାନ୍ଦଣା ଶୁଣି କେତେଜଣ ଡାକ୍ତର ଓ ନର୍ସ ଘର ଭିତରୁ ପଦାକୁ ବାହାରି ଆସିଲେ । ତାକୁ ବୋଧ ଦେବାପାଇଁ ଜଣେ ଡାକ୍ତର କହିଲେ—'ତୁମେ ଏଠାରେ ଆଉ ପାଟିତୁଣ୍ଡ କରନାହିଁ । ଗୋଟିଏ ବଡ଼ ଦୁର୍ଘଟଣା ଘଟିଯାଇଛି । ଏଇ ଡାକ୍ତରଖାନାର ବଡ଼ ଡାକ୍ତରଙ୍କର ମଟରଗାଡ଼ିଟି କାଲି ରାତିରେ ରାସ୍ତା ତଳକୁ ଗଡ଼ିପଡ଼ିଛି । ଡାକ୍ତରବାବୁଙ୍କ ମୁଣ୍ଡ ଫାଟିଯାଇଛି । ତାଙ୍କର ଅପରେସନ ହେବ । ରକ୍ତ ଦରକାର ପଡ଼ୁଛି । ଏଠାରେ ସେ ରକ୍ତ ମିଳୁନି । ତୁମେ ପାଟିତୁଣ୍ଡ ନ କରି ଚୁପ୍ ରହ । ତୁମ ବାପାଙ୍କ ଶବକୁ ତୁମେ ଏଠୁ ନେଇଯାଇପାର ।'

ଡାକ୍ତରବାବୁଙ୍କ କଥା ଶୁଣି ପୁପୁ ତା ଆଖିରୁ ଲୁହ ପୋଛୁ ମୁଣ୍ଡ ଟେକି ତାଙ୍କୁ ଆଡ଼େ ଚାହିଁଲା । ବଡ଼ ଡାକ୍ତରବାବୁଙ୍କୁ କାଲି ସେ କେତେ ଅନୁରୋଧ କରି ନ ଥିଲା ତାକୁ ଟିକେ ଏଠିକି ନେଇ ଆସିବାପାଇଁ ! ତାକୁ ନେଇ ଆସିଥିଲେ ତାର ବାପା ହୁଏତ ମରି ନଥାନ୍ତା ! ରକ୍ତ କିଣିବାପାଇଁ ତା ପାଖରେ ପଇସା ଥିଲା, କିନ୍ତୁ ତାର ବାପା ରକ୍ତ ପାଇପାରିଲେ ନାହିଁ । ହେଲେ ସେଇ ବଡ଼ ଡାକ୍ତରବାବୁଙ୍କର ଏମିତି କଣ ଦୁର୍ଘଟଣା ଘଟିଲା ଯେ ତାଙ୍କ ପାଇଁ ଆଜି ରକ୍ତ ଖୋଜା ଚାଲିଛି । ଘଡ଼ିଘଡ଼ିକେ ଏଇ ଦୁନିଆ କେତେ ବଦଳି ନ ଯାଏ ସତେ !

ଏତେ ଦୁଃଖରେ ବି ପୁପୁ ଏକଥା ଭାବିଲାକ୍ଷଣି ତା ମୁହଁ ଉଜ୍ଜ୍ୱଳ ହୋଇ ଉଠିଲା । ସେ କିଛି ସମୟ ଭାବି ତା ପାଖରୁ ଅଳ୍ପଦୂରକୁ ଚାଲି-ଯାଇଥିବା ଡାକ୍ତରବାବୁଙ୍କୁ ପଛରୁ ଡାକି କହିଲା—'ଆଚ୍ଛା, ବାବୁ, ମୋ ଦେହର ରକ୍ତ ସିନା ମୋ ବାପାଙ୍କ ରକ୍ତ ସହିତ ଅମେଳ ହେବାରୁ ତାଙ୍କର କାମରେ ଲଗିଲା ନାହିଁ । ବଡ଼ ଡାକ୍ତରବାବୁ ମନା କରିଦେଲେ । ହେଲେ ମୋ ରକ୍ତ ଡାକ୍ତରବାବୁଙ୍କ କାମରେ ଲାଗିବ କି ?'

ଡାକ୍ତରବାବୁ ଫେରି ଯାଉଯାଉ ପୁପୁର କଥା ଶୁଣି ଅଟକିଗଲେ । କହିଲେ—'ତୁମ ରକ୍ତର ରିପୋର୍ଟ ଅଛି । ଆଚ୍ଛା, ମୁଁ ଟିକିଏ ମିଳାଇ ଦେଖେ । ତୁମେ ମୋ ସହିତ ଆସ ।'

ପୁପୁ ଏଥର ଉଠିଲା ଏବଂ ଡାକ୍ତରବାବୁଙ୍କ ପଛେ ପଛେ ଗଲା ।

ଡାକ୍ତରବାବୁ ସଙ୍ଗେ ସଙ୍ଗେ ଅଫିସ ଭିତରକୁ ଗଲେ ଏବଂ ଗୋଟାଏ ଫାଇଲ୍ ବାହାର କରି କଣ ସବୁ ଖେଳାଇ ଦେଖିଲେ । ତାପରେ ଆନନ୍ଦରେ ଅଧୀର ହୋଇ ସେ ଚିତ୍କାର କରି ଉଠିଲେ—'ଏ ତ ବଡ଼ ଆଶ୍ଚର୍ଯ୍ୟ କଥା ମୁଁ ଦେଖୁଛି ! ଡାକ୍ତରବାବୁଙ୍କ ରକ୍ତ ତାଙ୍କର ପୁଅ ବା ସ୍ତ୍ରୀଙ୍କ ରକ୍ତ ସହିତ ମିଶିଲା ନାହିଁ । ତୁମ ରକ୍ତ ସହିତ ପୂରା ମିଶିଯାଉଛି । ଏଠାରେ ଏହି ଗ୍ରୁପ୍‌ର ରକ୍ତ ଜଣଙ୍କର ବି ନାହିଁ । ଚାଲ, ତୁମର ରକ୍ତ ନିଆଯିବ । ଡାକ୍ତରବାବୁ ବଞ୍ଚିଯାଇ ପାରନ୍ତି !'

ପୁପୁ କିଛି ନ କହି ତାଙ୍କ ପଛେ ପଛେ ଅପରେସନ ଥିଏଟର ଆଡ଼େ ଚାଲିଲା । ତାର ଯେମିତି ମନେ ହେଉଥିଲା, ବାହାରେ ପଡ଼ିଥିବା

ତା ବାପାର ମୁର୍ଦ୍ଦାରଟା ହସି ହସି ତାକୁ କହୁଛି—ଭଲ କାମ କରିଛୁ ପୁପୁ ! ତୋର ଜୀବନ ଧନ୍ୟ । ପରର ସେବାପାଇଁ ଯେ ନିଜ ଜୀବନକୁ ବାଜି ଲଗାଇ ପାରେ ସେଇ ତ ଦେବତା । ତାଭଳି ମଣିଷ ଏଇ ଦୁନିଆରେ ଖୁବ୍ କମ୍ ଜନ୍ମ ହୋଇଥାନ୍ତି ।

ପୁପୁ ଛିଡ଼ା ହୋଇଥିଲା ପଥର ମୂର୍ତ୍ତିଟିଏ ଭଳି । ତା ଆଖିରୁ ଝରି-ଆସୁଥିଲା ଦୁଇଧାର ଲୁହ କେବଳ । ଆଗରେ ଡାକ୍ତରବାବୁ ତା ଦେହରୁ ରକ୍ତ ନେବାକୁ ନିଜକୁ ପ୍ରସ୍ତୁତ କରି ନେଇଥିଲେ ସେତେବେଳେ ।




ଗୋଟିଏ କୁକୁରର ୪ଟି ଛୁଆ । ଦିନେ ସେମାନେ କାନ୍ଦିକାନ୍ଦି ଆସି ତାଙ୍କ ମାଆକୁ କହିଲେ—ମାଆଲୋ, ଆମକୁ ମଣିଷ ପିଲାମାନେ ପିଟୁଛନ୍ତି । ଟେକା ମାରୁଛନ୍ତି, ଆଉ କାନକୁ, ବେକକୁ ଧରି ଟେକିନେଇ କଚାଡ଼ି ଦେଉଛନ୍ତି ।

କୁକୁର ତା ପିଲାମାନଙ୍କୁ କୋଳରେ ପୂରାଇ ଆଉଁସିଦେଲା । ଖଣ୍ଡିଆ ହୋଇଥିବା ଜାଗାମାନଙ୍କୁ ଉପରେ ଗୁଣ୍ଡି ପକାଇଲା । ସେମାନଙ୍କୁ ବୁଝାଇ କହିଲା—ମଣିଷ ପିଲାମାନେ ବଡ଼ ଦୁଷ୍ଟ । ସେମାନେ ପଶୁଛୁଆଙ୍କ ସାଙ୍ଗରେ ଖେଳନ୍ତି । ଖେଳିଲା ବେଳେ ପଶୁ ଛୁଆମାନଙ୍କୁ ପିଟନ୍ତି, ବାଡ଼ିରେ ଖେଞ୍ଚନ୍ତି, ଟେକା ମାରନ୍ତି ଆଉ ତାଙ୍କୁ ଟେକି କଚାଡ଼ନ୍ତି । ସେମାନଙ୍କୁ ଯେ ଏହାଦ୍ୱାରା କେତେ କଷ୍ଟ ହୁଏ, ମଣିଷ ପିଲାମାନେ ସେ କଥା ଜମା ଭାବନ୍ତି ନାହିଁ । ମଣିଷ ପିଲାଙ୍କ ମନଖୁସି ଖେଳ ତମ ପାଇଁ କାଳ । ମଣିଷ ପିଲା-ମାନଙ୍କୁ ଏକଥା କିଏ କହିବ ? କହିଲେ ବି ସେ କଣ ବୁଝିବେ ? ସେମାନଙ୍କୁ

ଯଦି ଆଉ କିଏ ସେମିତି ପିଟାପିଟି, ଖେଞ୍ଚାଖେଞ୍ଚି, କଚଡ଼ାକଚଡ଼ି, କରନ୍ତି, ତେବେ ସେମାନେ ବୁଝିବେ । ହଉ, ତୁମେ ଏଥର ପଦାକୁ ନ ବାହାରି ଏହି ପାଳଗଦା ତଳେ ଲୁଚି କରି ରୁହ । ବଡ଼ ହେଲେ ବାହାରକୁ ବାହାରିବ ।

ସେଇଦିନୁ କୁକୁର ଛୁଆମାନେ ସେହି ପାଳ ଗଦା ତଳେ ଛପି କରି ରହିଲେ । କିଛିଦିନ ପରେ ପୁଣି ସେମାନେ ତାଙ୍କ ମାଆକୁ କହିଲେ— ମାଆଲୋ, ଆମେ ଏ ଅନ୍ଧାରିଆ ପାଳଗଦା ତଳେ ରହି ରହି ଆମ ମୁଣ୍ଡ ବୁଲେଇ ଦେଲଣି । ଆମେ କିଛି ଜାଣିପାରୁ ନାହୁଁ କି ଦେଖିପାରୁ ନାହୁଁ । ତୁ ସବୁଆଡ଼େ ବୁଲୁଛୁ । ଆମକୁ ଗୋଟେ ଗପ କହ, ଆମେ ଶୁଣିବୁ ।

କୁକୁର ବଡ଼ ଅଡ଼ୁଆରେ ପଡ଼ିଲା । ସିଏ ବା କି ଗପ କହିବ ? ପିଲାମାନଙ୍କୁ କହିଲା—ତୁମେ ଥାଅ, ମୁଁ ଯାଉଛି ଗୋଟିଏ ଗପ ବହି କାହାଘରୁ ଆଣିବି । ତୁମେ ପଢ଼ି ନ ପାରିଲେ ବି ଚିତ୍ର ଦେଖି ସବୁ ବୁଝିପାରିବ ।

କୁକୁର ପିଲାମାନଙ୍କୁ ବୁଝାଇ ସୁଝାଇ ଗପ ବହି ଆଣିବାକୁ ବାହାରିଲା । ସେ ପ୍ରଥମେ ଯାଇ ଜଣେ ଧନୀ ଲୋକ ଘରେ ପହଞ୍ଚିଲା । ତାଙ୍କ ଘର ଆଗରେ ଗୋଟିଏ ମଟରଗାଡ଼ି ଥୁଆ ହୋଇଥାଏ । ସେ ଭାବିଲା ଏଇ ଘରେ ନିଶ୍ଚୟ ଗପ ବହି ଥିବ । ସେଇ ଘରେ ପଶି ଲୁଚି ଲୁଚି ସବୁ ବଖରା ଖୋଜି ଆସିଲା । ଖଣ୍ଡିଏ ହେଲେ ବହି ପାଇଲା ନାହିଁ । ସେ ଯେଉଁଆଡ଼େ ଚାହିଁଲା, ଖାଲି ଲୁଗାପଟା ଆଉ ଜିନିଷପତ୍ର । ବହି ବୋଲି ଖଣ୍ଡିଏ ଦେଖିଲା ନାହିଁ । ସେଠାରୁ ନିରାଶ ହୋଇ ଫେରିଯାଇ କୁକୁରଟି ଆଉ ଜଣକ ଘରେ ପହଞ୍ଚିଲା । ତାଙ୍କ ଘରେ ଅନେକ ବହି ଥିଲା କିନ୍ତୁ ପିଲାଙ୍କ ପାଇଁ କିଛି ବହି ନ ଥିଲା । ସେଠାରୁ ଯାଇ ଆଉ ଜଣଙ୍କ ଘରେ ପହଞ୍ଚିଲା । ସେଠି ଦେଖିଲା, ଚିତ୍ର ବିଚିତ୍ର ହୋଇଥିବା ଅନେକ ବହି । ସେଇ ବହିରୁ ଗୋଟିଏ ପାଟିରେ କାମୁଡ଼ି ଧରି ତା ପିଲାମାନଙ୍କ ପାଖକୁ ଧାଇଁଲା । ପିଲାମାନେ ବହି ଦେଖି ଭାରି ଖୁସି ହୋଇଗଲେ । ସମସ୍ତେ ଗୋଟିଏ ବହିକୁ ଘେରିଗଲେ । କୁକୁର ବୁଝାଇଲା କଳିକଜିଆ କରି ନାହିଁ । ବହି ଚିରିଯିବ । ଜଣେ ବହି ଧରୁ, ସମସ୍ତେ ଚିତ୍ର ଦେଖ ।

କୁକୁର ଛୁଆମାନେ ବହିରୁ ଚିତ୍ର ଦେଖି ଭାରି ଖୁସି ହେଲେ । ମାଆକୁ କହିଲେ—ମାଆ, ଆମକୁ ତୁ ବହିରୁ ପଢ଼ି ଗପ ଗୀତ ଶୁଣାଇ ଦେ । ଖାଲି ଚିତ୍ର ଦେଖିଲେ ସବୁ କଥା ବୁଝି ହେଉନାହିଁ ।

କୁକୁର କହିଲା—ମୁଁ କ'ଣ ମଣିଷମାନଙ୍କର ଏ ବହି ପଢ଼ିପାରିବି ? ଆମ ପଶୁମାନଙ୍କ ପାଇଁ ଅକ୍ଷର ନାହିଁ କି ବହି ନାହିଁ ।

କୁକୁରଠୁଆମାନେ ପୁଣି ପଚାରିଲେ—ଆମର ବହି କାହିଁକି ନାହିଁ ?

କୁକୁର କହିଲା—ଆମ ପଶୁଜାଇଜର ସମସ୍ତେ କହିବା ପାଇଁ ଗୋଟିଏ ସାଧାରଣ ଭାଷା ନାହିଁ । ଆମେ ଲେଖିବା ପାଇଁ କୌଣସି ଅକ୍ଷର ନାହିଁ କି ଆମେ ପଢ଼ିବା ପାଇଁ କୌଣସି ସ୍କୁଲ ନାହିଁ । ଆଉ ବହି ଆସିବ କୁଆଡ଼ୁ ?

ପିଲମାନେ ଏକସ୍ୱରରେ କହିଲେ—ମାଆ, ଏସବୁ କ'ଣ ଜମା ହୋଇପାରିବ ନାହିଁ ?

କୁକୁର ଟିକେ ଚିନ୍ତା କଲା । ତା'ପରେ କହିଲା—ତମେସବୁ ଭଲ କଥାଟିଏ କହିଚ । ଆମେ ଏ ଦିଗରେ କେହି ଚେଷ୍ଟା କରିନାହୁଁ । ଗୋଟିଏ ପଶୁସଭା ବସେଇ ଏ କଥାଟା ବିଚାର କଲେ ହୁଏତ କିଛି କରିହେବ । ତୁମେ ବ୍ୟସ୍ତ ହୁଅନା । ମୁଁ ଅନ୍ୟ ପଶୁ ଭାଇମାନଙ୍କୁ ଏକଥା କହି ଗୋଟିଏ ସଭା ଡାକିବାର ବ୍ୟବସ୍ଥା କରୁଛି ।

ସତକୁ ସତ, ଗୃହରଦିନ ପରେ ପଶୁମାନଙ୍କର ଗୋଟିଏ ବିରାଟ ସଭା ହେଲା । ସେଥିରେ ବାଘ, ଭାଲୁ , ହାତୀ, ବିଲୁଆ, ମାଙ୍କଡ଼, ବଣୁଆ-ପଶୁ ଆଉ ଗାଈ, ଛେଳି, ମେଣ୍ଢା, ଘୋଡ଼ା, ଗଧ, କୁକୁର ଇତ୍ୟାଦି ସବୁ ଗାଉଁଲି ପଶୁ ଯୋଗ ଦେଲେ । ବଣଟା ପଶୁମାନଙ୍କ ପାଟିଗୋଳରେ କମ୍ପି-ଉଠୁଥାଏ । ବହୁ ବାଦବିବାଦ ପରେ ବାଘ ସଭାପତି ହୁଅନ୍ତୁ ବୋଲି ବିଲୁଆ ପ୍ରସ୍ତାବ ଦେଲା । ସେ ପ୍ରସ୍ତାବକୁ କରତାଳି ଦେଇ ସମସ୍ତେ ସମର୍ଥନ କଲେ । ସଭା କାର୍ଯ୍ୟ ଆରମ୍ଭ ହେଲା ।

ସଭାର ଉଦ୍ଦେଶ୍ୟ ବୁଝାଇବା ପାଇଁ କୁକୁର ଠିଆହୋଇ କହିଲା—ସଭାପତି ମହାଶୟ ଓ ମୋର ଭାଇଭଉଣୀମାନେ ! ଆପଣମାନେ ସମସ୍ତେ ଜାଣନ୍ତି, ମଣିଷ ପ୍ରଥମେ ଆମ ପରି ବଣରେ ରହି ଝରଣାର ପାଣି ପିଇ ବଣର ଫଳମୂଳ ଖାଇ ଚଳୁଥିଲା । ଖରାବର୍ଷାରୁ ରକ୍ଷା ପାଇବା ପାଇଁ ପାହାଡ଼ ଗୁମ୍ଫାରେ ରହୁଥିଲା । ସେତେବେଳେ ତାର କୌଣସି ଭାଷା ନ ଥିଲା । ସେ

ଲେଖି ଜାଣି ନ ଥିଲା କି ଆଜିପରି ତାର ବନ୍ଧୁପକ୍ଷ ନ ଥିଲା । ମୋଟ ଉପରେ ପ୍ରଥମେ ମଣିଷ ଠିକ୍ ଆମରି ପରି ଚଳୁଥିଲା । ଆସ୍ତେ ଆସ୍ତେ ସିଏ ଗୃହବାସ କରି ଶିଖିଲା, ଘର କରି ଶିଖିଲା । ତାପରେ ବଣ ଛାଡ଼ି ଗାଁରେ ରହିଲା । ପରସ୍ପର ଭିତରେ କଥାବାର୍ତ୍ତା କରିବାପାଇଁ ଭାଷା ତିଆରି କଲା । ଅକ୍ଷର ତିଆରି କଲା । ତାପରେ ଗୋଟିଏ ପରେ ଗୋଟିଏ ନୂଆ ନୂଆ ଜିନିଷ ବାହାର କଲା । ବର୍ତ୍ତମାନ ମଣିଷ କ'ଣ ନ କରୁଛି ? ପାଣିରେ ମାଛ ପରି ବୁଡ଼ିପାରୁଛି, ଆକାଶରେ ଚଢ଼େଇଠାରୁ ଅଧିକ ବେଗରେ ଉଡ଼ିପାରୁଛି, ଗାଡ଼ି ମଟର କରି ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଅତି ଅଳ୍ପ ସମୟରେ ଯାଇପାରୁଛି । ଟେଲିଫୋନ୍, ରେଡ଼ିଓ, ଟେଲିଭିଜନ ଆଦି ଅନେକ ଜିନିଷ କରିପାରିଛି । ଏସବୁ ଉନ୍ନତିର ମୂଳରେ କେବଳ ଗୋଟିଏ କଥା ! ସେଇଟା ହେଉଛି ପାଠ । ଆମେ ଚେଷ୍ଟାକଲେ କ'ଣ ପାଠ ପଢ଼ିପାରିବା ନାହିଁ ? ମଣିଷ ନିଜ ଚେଷ୍ଟା ବଳରେ ଆମରି ଅବସ୍ଥାରୁ ଉଠି ଆଜି କେତେ ଉପରକୁ ନ ଯାଇଛି ! ଆମେ ଯଦି ଚେଷ୍ଟା କରିବୁ, ପାଠ ପଢ଼ି ନ ପାରିବୁ କାହିଁକି ? ଚେଷ୍ଟାର ଅସାଧ୍ୟ ଏ ଦୁନିଆରେ କ'ଣ ଅଛି ? ଯେତେଦିନ ପର୍ଯ୍ୟନ୍ତ ଆମେ ପାଠ ନ ପଢ଼ିବୁ, ସେତେଦିନ ପର୍ଯ୍ୟନ୍ତ ଆମ ପଶୁସମାଜର ଉନ୍ନତି ନାହିଁ । ମୁଁ ଏ ସଭାକୁ ଏତିକି ପଚାରୁଛି, ଆମେ ଚେଷ୍ଟା କଲେ କ'ଣ ଆମ ପାଠ ପଢ଼ାର ବ୍ୟବସ୍ଥା କରିପାରିବା ନାହିଁ ?

ଏତିକି କହି କୁକୁର ବସି ପଡ଼ିଲା । ସଭାରେ ଫୁସ୍‌ଫାସ୍ ଟୁପ୍‌ଟାପ୍ ଶୁଣାଗଲା । ବିଲୁଆ ସଭାପତିଙ୍କର ଅନୁମତି ନେଇ କହିବାକୁ ଠିଆ ହେଲା । ସେ କହିଲା—ସଭାପତି ମହାଶୟ ଓ ମୋର ପ୍ରିୟ ଭାଇ ଓ ଭଉଣୀମାନେ ! କୁକୁର ଯାହା କହିଲା ଆପଣମାନେ ଶୁଣିଲେ । ମଣିଷ ଦିନେ ଆମରି ପରି କିଛି ଜାଣି ନ ଥିଲା । ଆମରି ଅବସ୍ଥାରେ ଥିବା ମଣିଷ ଯଦି ଏତେ କାମ କରିପାରିଲା, ଆମେ ନ କରି ପାରିବା କାହିଁକି ? (ସମସ୍ତେ ନିଶ୍ଚୟ ନିଶ୍ଚୟ କହି କରତାଳି ଦେଲେ ।) ପ୍ରଥମେ ଆମେ ଆମର ଭାଷା କଥା ଚିନ୍ତା କରିବା ଓ ଏଥିପାଇଁ ଅକ୍ଷର ତିଆରି କରିବା । ତାପରେ ବହି ତିଆରି ହେବ । ଶେଷରେ ସ୍କୁଲ ଖୋଲି ସବୁ ପଶୁଙ୍କୁ ପାଠ ପଢ଼ାଇବାକୁ ହେବ ।

ତାପରେ ମାଙ୍କଡ଼ ଉଠି କହିଲା—ଭାଇମାନେ, ଏଇଟା କିଛି ଅସୁବିଧା କି ଅସମ୍ଭବ କଥା ନୁହେଁ । ଆମେ ମଣିଷର ବଂଶଧର । ମଣିଷ ପରି ଆମେ

ସବୁ କରିପାରିବୁ । ଆମେ ସର୍କସରେ ଅଙ୍କ କଷୁ । ସାଇକେଲ ଚଳାଉ ଆଉ ନାଚ କରୁ । କୁକୁର ଗାଡ଼ି ଟାଣେ । ଭାଲୁ ମଟର ଚଳାଏ, ହାତୀ ଫୁଟ୍‌ବଲ ଖେଳେ । ତେଣୁ ଆମେ ଚେଷ୍ଟା କଲେ ମଣିଷ ପରି ସବୁ କରିପାରିବା । (ସମସ୍ତେ ଖୁସି ହୋଇ ତାଳି ମାରିଲେ) ।



ମାଙ୍କଡ଼ ତାର ଭାଷଣ ଶେଷକରି ବସିପଡ଼ିଲା । ତାପରେ ସବୁ ପଶୁ ଗୋଟି ଗୋଟି ହୋଇ ଠିଆ ହୋଇ ସେମାନଙ୍କ ମତ ଦେଲେ । ଶେଷରେ ସଭାପତି ବାଘ ଠିଆହୋଇ କହିଲା—ଭାଇ ଓ ଭଉଣୀମାନେ, ଆମେ ସମସ୍ତେ ଏକମତ ଯେ ଆମେ ଆମର ଉନ୍ନତି ପାଇଁ ଚେଷ୍ଟା କରିବା । ପ୍ରଥମ କଥା ହେଲା ଆମେ କେମିତି ପାଠ ପଢ଼ି ପାରିଲେ ଆମ ଉନ୍ନତିର ବାଟ ଖୋଲିଯିବ । ଆମେ ପାଠ ପଢ଼ିଲେ ମଣିଷପରି ମଟର, ଉଡ଼ାଜାହାଜ, ରେଳଗାଡ଼ି, ରେଡ଼ିଓ, ଟେଲିଭିଜନ ଓ ଟେଲିଫୋନ୍ ଇତ୍ୟାଦି ନୂଆ ନୂଆ ଜିନିଷ ତିଆରି କରିବା । ନାନାପ୍ରକାର ହାତ ହତିଆର ତିଆରି କରି

ମଣିଷର ଶାସନ, ତାର ଅତ୍ୟାଚାରର ବିରୋଧରେ ଲଢ଼ିବା । କିନ୍ତୁ ଏମିତି ସଭାରେ କିଛି କରିହେବ ନାହିଁ । ତେଣୁ ମୁଁ ପ୍ରସ୍ତାବ ଦେଉଛି—ବିଲୁଆ, ମାଙ୍କଡ଼ ଓ ଠେକୁଆକୁ ନେଇ ଗୋଟିଏ ତିନିଜଣିଆ କମିଟି ଗଢ଼ାଯାଉ । ସେମାନେ ପ୍ରତିଦିନ କିଛି ସମୟ ଏକାଠି ବସି ଉପାୟ ଚିନ୍ତା କରନ୍ତୁ । କଣ କଲେ ଆମର ଉନ୍ନତି ହେବ, ଆମର ଗୋଟିଏ ନୂଆ ଭାଷା କେମିତି ବାହାରି ପାରିବ, ବହି ଲେଖିବା ପାଇଁ ଆମର ଅକ୍ଷର କ'ଣ ହେବ, ଏସବୁ ବିଷୟ ସେମାନେ ଚିନ୍ତା କରନ୍ତୁ । ପ୍ରତି ମାସରେ ଏଇଦିନ ଏଇଠି ଆମର ସଭା ହେବ । କମିଟି ଦେଇଥିବା ପ୍ରସ୍ତାବ ଉପରେ ଆଲୋଚନା କରାଯାଇ କୌଣସି ନିଷ୍ପତ୍ତି ନିଆଯିବ ।

ସମସ୍ତଙ୍କ ମନକୁ କଥାଟା ପାଇଲା । ସମସ୍ତେ କରତାଳି ଦେଇ ବାଘର କଥାକୁ ସମର୍ଥନ କଲେ । ସଭା ଭାଙ୍ଗିଲା । ସମସ୍ତେ ମନଖୁସିରେ ନିଜ ନିଜର ଘରକୁ ଫେରିଗଲେ । କୁକୁର ଆସି ତା ପିଲାମାନଙ୍କୁ ଏସବୁ କଥା କହିଲା । ସେମାନେ ମନଖୁସିରେ ଡେଇଁ ଡେଇଁ ନାଚିଲେ ।

ଯିଏ ଯେଉଁ ଅବସ୍ଥାରେ ଥାଉନା କାହିଁକି, ନିଜ ସମାଜର ଓ ଦେଶର ଉନ୍ନତି କରିବାକୁ ଚିନ୍ତା କରିବା ଉଚିତ । ବର୍ତ୍ତମାନ ଯେତିକି ସୁବିଧା ଓ ସୁଯୋଗ ମିଳୁଛି ତାହା ଯଥେଷ୍ଟ । ତାଠାରୁ ଅଧିକ କିଛି କରିବାକୁ ଆଉ ନାହିଁ—ଏକଥା ଭାବିବା ଉଚିତ ନୁହେଁ । ତୁମେ ଅଧିକ କିଛି କରିପାର ଅବା ନପାର, କିନ୍ତୁ ଦେଶର ଉନ୍ନତିକର କାମ କରିବାର ଚିନ୍ତା ତୁମ ମନରେ ସବୁବେଳେ ରହିବା ଉଚିତ । କିଏ କହିବ ଭବିଷ୍ୟତରେ ତୁମେ ଦେଶକୁ ଓ ସମାଜକୁ କଣ ଦାନ କରିବ ?

# ଭଲ କାମ

ବୀରେନ୍ଦ୍ର କୁମାର ସାମନ୍ତରାୟ



ମାମୁଁଙ୍କଠୁଁ ନୂଆ ଚକ୍‌ଚକ୍ ପାଞ୍ଚଟଙ୍କିଆ ନୋଟ୍ ଖଣ୍ଡିଏ ପାଇ ପ୍ରଶାନ୍ତ ମନେ ମନେ ଭାବୁଥାଏ – ବସ୍‌ରୁ ଓହ୍ଲାଇଲାମାତ୍ରେ ଆଗ କୁନା ମୁନାଙ୍କ ପାଇଁ ଚକୋଲେଟ୍ କିଣିବ । ବାକି ଯାହା ପଇସା ବଳିବ, ସେଥିରେ ଆଇସ୍‌କ୍ରିମ୍ ଆଉ ଚେନାଚୁର କିଣି ଖାଇବ । ବାଃ କି ମଜା ! କିନ୍ତୁ ହଠାତ୍ ତାର ମାମୁଁଙ୍କ କଥା ମନେ ପଡ଼ିଗଲା । ମାମୁଁ କହିଥିଲେ "ଭଲ କାମରେ ଏ ଟଙ୍କା ଖର୍ଚ୍ଚ କରିବୁ ।" ତେବେ ଚକୋଲେଟ ଆଉ ଆଇସ୍‌କ୍ରିମ୍ କିଣିବାଟା କଣ ଭଲ କାମ ? ତା କଲେ ଘଡ଼ିକ ଭିତରେ ତ ଟଙ୍କା ପାଞ୍ଚଟା ସାଫ୍ ହୋଇଯିବ । ନା, ନୋଟ୍‌ଟା ସେମିତି ଥାଉ । ପରେ ଭାବିଚିନ୍ତି ଖର୍ଚ୍ଚ କରିବ ।

ବସ୍ ଷ୍ଟାଣ୍ଡରେ ଠିଆହୋଇ ଏମିତି ଭାବି ହେଉଥିଲା ବେଳେ ବସ୍‌ଟା ଆସି ପହଞ୍ଚିଗଲା । ଷ୍ଟାଣ୍ଡରେ ଥିବା ଲୋକେ ଠେଲାପେଲା ହୋଇ

ବସ୍ ଭିତରକୁ ପଶିବାରେ ଲଗିଲେ । ସମସ୍ତଙ୍କ ପରେ ପ୍ରଶାନ୍ତ ଭିତରକୁ ପଶିଲା । ସେତେବେଳକୁ ବସ୍ ଭିତରେ ଲୋକ ଖୁନ୍ଦି ହୋଇ ଯାଇଥାନ୍ତି । ଖୁଦଟିଏ ପକାଇବାକୁ ବି ଜାଗା ଟିକେ ନ ଥାଏ । ଠିକ୍ ଏତିକବେଳେ ବୁଢ଼ୀଟିଏ ଧଇଁସଇଁ ହୋଇ ଆସି ବସ୍ ଭିତରକୁ ପଶିଗଲା । ହାତରେ ତାର କୋଉ କାଳର ମଇଳାକୋଚଟ ବ୍ୟାଗ୍‌ଟିଏ । ତା ଭିତରେ ବୋଧହୁଏ କିଛି ଜିନିଷ ଥାଏ । ମହିଳାମାନଙ୍କ ପାଇଁ ଯେଉଁ ସିଟ୍ ଥାଏ ସେଥିରେ ଦୁଇ ତିନିଜଣ ଭଦ୍ରଲୋକ ବେଶ୍ ଆରାମରେ ବସିଯାଇଥାନ୍ତି । ଜାଗାଟିକେ ପାଇବା ଆଶାରେ ବୁଢ଼ୀଟି ଯାଇ ସେମାନଙ୍କ ପାଖରେ ଛିଡ଼ାହେଲା । ହେଲେ କେହି ଜଣେ ବି ତାକୁ ବସିବାକୁ ଜାଗା ଛାଡ଼ି ଦେଲେନି । ତେଣୁ ବିଚାରି ବୁଢ଼ୀଟି ବାଧ୍ୟ ହୋଇ ବସ୍ ଭିତରେ ଥିବା ଗୋଟାଏ ଖୁଣ୍ଟକୁ ଧରି ଠିଆହୋଇ ରହିଲା ।

ବସ୍ ଚାଲିଲା । କଣ୍ଡକ୍ଟର ଟିକେଟ୍ କାଟିବା ଆରମ୍ଭ କଲେ । ମାମୁଁ ଦେଇଥିବା ପଇସାରେ ପ୍ରଶାନ୍ତ ନିଜ ପାଇଁ ଟିକେଟ କିଣିନେଲା । ଏଥର କଣ୍ଡକ୍ଟର ବୁଢ଼ୀ ପାଇଁ ବି ଟିକେଟ କାଟିଦେଲେ । ବୁଢ଼ୀଟି ଟିକେଟ୍ ପଇସା ପାଇଁ ବ୍ୟାଗ୍‌ରେ ହାତ ପୂରାଇ ଦେଖେ ତ ସେଥିରେ ଗୋଟିଏ ହେଲେ ପଇସା ନାହିଁ । ତେଣୁ ସେ ମନକୁ ମନ ଗୁଣୁଗୁଣୁ କରି କହିଲା—ଔଷଧ କିଣିଲା ପରେ ତିନି ଟଙ୍କା ପଚିଶ ପଇସା ବ୍ୟାଗ୍‌ରେ ରଖିଥିଲି । ଗଲା କୁଆଡ଼େ ? ତାପରେ ସେ କଣ୍ଡକ୍ଟରଙ୍କୁ ବ୍ୟାଗ୍‌ଟି ଦେଖାଇ କହିଲା—"ପୁଅ; ଏଇ ବେଗ୍‌ରେ ପଇସା ରଖିଥିଲି । ହେଲେ କାହିଁ ପାଉନି ।"

କଣ୍ଡକ୍ଟର ଟିକେ ଗମ୍ଭୀର ହୋଇ କହିଲେ—"ହୁଁ, ପଇସା ନ ଦେବାର ଇଏ ଗୋଟାଏ ଫନ୍ଦି । ଯଦି ପଇସା ନାହିଁ, ତେବେ ବସ୍‌ରୁ ଓହ୍ଲାଇପଡ଼ ।"

ବୁଢ଼ୀ ଖୁବ୍ କାକୁତି ମିନତି କରି କହିଲା—"ପୁଅ, ଷାଠିଏ ବର୍ଷର ବୁଢ଼ୀ ମଣିଷ ମୁଁ । ପଇସା ପଚିଶଟା ପାଇଁ ତୋ ଆଗରେ ମିଛ କହିବି କାହିଁକି ? ଏଇ ଦେଖୁନୁ ବେଗ୍‌ଟା ! କିଏ ତଳୁ କାଟିଦେଇଛି ।"

ସତକୁ ସତ ବେଗ୍ ତଳଟା କଟିଯାଇଥାଏ । ହେଲେ କଣ୍ଡକ୍ଟର ବୁଢ଼ୀ କଥାରେ କାନ ନ ଦେଇ ଟିକେ ରାଗିଯାଇ କହିଲା—ମୋର ସେଥିରେ

କ'ଣ ଯାଏ ଆସେ ହୋ ! ଟିକେଟ ପଇସା ନ ଦେବା ପାଇଁ ଏମିତି ତ ଅନେକ ଲୋକ, କେତେ ପ୍ରକାରର ଫନ୍ଦି ଫିକର ବାହାର କରୁଛନ୍ତି । ମୁଁ ତ ଆଉ ବ୍ରହ୍ମା ହୋଇନ ଯେ କିଏ ସତ କହୁଛି କିଏ ମିଛ କହୁଛି ସେକଥା ଚଟ୍‌କରି ଜାଣିଦେବି । ତେଣୁ ଭଲରେ କହୁଛି, ବସ୍‌ରୁ ଓହ୍ଲାଇଯାଅ ।"

ଭିଡ଼ ଭିତରୁ ଜଣେ କିଏ କହିଲା—"ହୋ କଣ୍ଡକ୍ଟର ବାବୁ, ବୁଢ଼ୀ ଲୋକଟା ତ । କେତେ ବାଟ ବା ଯିବ । ନେଇଯାଅ ।"

କଣ୍ଡକ୍ଟର ସେଇ ଭଦ୍ରଲୋକଙ୍କୁ ଶୁଣେଇ ଶୁଣେଇ କହିଲେ—"ବୁଝିଲେ ଆଜ୍ଞା, ଏଇଟା ସରକାରୀ ବସ୍ । ବିନା ଟିକେଟରେ ନେଲେ ମୋତେ ଜୋରିମାନା ତ ଦେବାକୁ ପଡ଼ିବ । ତା ସାଙ୍ଗେ ସାଙ୍ଗେ ଚାକିରିଟା ଯେ ଚାଲି ନ ଯିବ ସେ କଥା କିଏ କହିବ ?

ଏକଥା ଶୁଣି ଭଦ୍ରଲୋକ ବିଚରା ଚୁପ୍ ହୋଇଗଲେ । ଏଥର ବୁଢ଼ୀଟି ବିକଳରେ ବସ୍ ଭିତରେ ଥିବା ପ୍ରାୟ ସମସ୍ତଙ୍କ ମୁହଁକୁ ଥରେ ଥରେ ଚାହିଁଗଲା । ହେଲେ ପଇସା ଦେବା ତ ଦୂରର କଥା, ଆଉ କେହି ଜଣେ ବି ତା ପାଇଁ ପଦେ କହିଲେନି । ଓଲଟି ଅନେକ ବୁଢ଼ୀ ଆଉ କଣ୍ଡକ୍ଟର ଭିତରେ ଚାଲିଥିବା ତାମସା ଦେଖି ମୁରୁକି ମୁରୁକି ହସୁଥାନ୍ତି । ସେମାନଙ୍କ ହସ ଦେଖି କଣ୍ଡକ୍ଟର ଆହୁରି ଉତ୍ସାହିତ ହୋଇ ଯାହା ପାଟିକୁ ଆସିଲା, ବୁଢ଼ୀକୁ ଗାଳି ଦେବାରେ ଲାଗିଗଲା । ତେଣୁ ବିଚରା ବୁଢ଼ୀଟି ଲାଜରେ ଜଡ଼ସଡ଼ । ଆଖିରୁ ତାର ଧାର ଧାର ହୋଇ ଲୁହ ବି ବହି ଯାଉଥାଏ ।

ଏତେବେଳଯାଏଁ ପ୍ରଶାନ୍ତ ବୁଢ଼ୀ ଆଉ କଣ୍ଡକ୍ଟରର କଥାବାର୍ତ୍ତା ଶୁଣି ଆସୁଥିଲା । ସେ ଦେଖିଲା ଆଗପଟ ସିଟ୍‌ରେ ବସିଛନ୍ତି ତାଙ୍କରି ସାଇର ସେଠ୍ କରୋଡ଼ି ମଲ୍ଲ । ଲକ୍ଷ ଲକ୍ଷ ଟଙ୍କାର ବ୍ୟବସାୟୀ । ଗଲା ବର୍ଷ ପ୍ରାୟ କୋଡ଼ିଏ ହଜାର ଟଙ୍କା ଖର୍ଚ୍ଚ କରି ଦୁର୍ଗାପୂଜା କରାଇଥିଲେ । ସହରରେ ଖୁବ୍ ଗୋଟାଏ ବଡ଼ ଧର୍ମଶାଳା ବି ତିଆରି କରିଛନ୍ତି । ଆଉ ତାଙ୍କ ପାଖକୁ ବସିଛନ୍ତି ସହରର ନାମଜାଦା ଓକିଲ ନରେନ୍ଦ୍ରବାବୁ । ପାଞ୍ଚମହଲା କୋଠା । ନୂଆ ଚକ୍ ଚକ୍ ମଟରଗାଡ଼ି । ଦିନକୁ ଶହ ଶହ ଟଙ୍କା ରୋଜଗାର, ହେଲେ ସେ ବି ସେମିତି ଚୁପ୍ ଚାପ୍ ବସିରହିଛନ୍ତି । ସତେ ଯେମିତି ବୁଢ଼ୀର କରୁଣ

ମିନତି ତାଙ୍କ କାନରେ ପଡ଼ିପାରୁନାହିଁ । ସେମାନଙ୍କ କଥା ଶୁଣୁଶୁଣୁ ପ୍ରଶାନ୍ତର ମନଟା ବିଦ୍ରୋହ କରିଉଠିଲା । ସେ ଭାବୁଥିଲା, ଧିକ୍ ଏମାନଙ୍କ ବଡ଼ଲୋକୀ ପଣିଆ ! ନିଆଶ୍ରୀ ବୁଢ଼ୀଟାକୁ ଯିଏ ପଚିଶଟା ପଇସା ବି ଦେଇପାରୁନାହାନ୍ତି, ଲକ୍ଷ ଲକ୍ଷ ଟଙ୍କାର ମାଲିକ ହେଲେ ଲାଭ କଣ ? ସେଠ୍ ସାହେବ ଆଉ ଓକିଲ ନରେନ୍ଦ୍ରବାବୁଙ୍କ ପ୍ରତି ତା ମନରେ ଯେତିକି ଘୃଣା ହେଉଥିଲା ବୁଢ଼ୀଟିପାଇଁ ସେତିକି ଦୟା ବି ଆସୁଥିଲା ।

ହଠାତ୍ କଣ୍ଡକ୍ଟର ବେଲ୍ ମାରି ବସ୍‌ଟା ଅଟକାଇ ଦେବାରୁ ପ୍ରଶାନ୍ତର ଭାବନାର ଖିଅ ଛିଣ୍ଡିଗଲା । ସେ ଦେଖିଲା କଣ୍ଡକ୍ଟର ବୁଢ଼ୀକୁ ତଳକୁ ଓହ୍ଲାଇ ଦେବାକୁ ବସିଲେଣି । ବୁଢ଼ୀ କାନ୍ଦି କାନ୍ଦି କହୁଥାଏ—ପୁଅ, ମୋତେ ଟିକେ ଦୟାକର । ପଚିଶଟା ପଇସା ପାଇଁ ଚୋର କରୁଛ ସତେଯିବନ । ଏଠି ଓହ୍ଲେଇଦେଲେ ଏ ରାତି ଅନ୍ଧାରରେ ମୁଁ ଘରକୁ ଯିବି କେମିତି ? ଦୟାକର ବାପ, ତୋର ଧର୍ମ ହେବ ।”

ଏତେ କଥାରେ ବି କଣ୍ଡକ୍ଟରର ମନ ବଦଳିଲା ନାହିଁ । ଓଲଟି ସେ ବୁଢ଼ୀକୁ ଧମକ ଦେଇ କହିଲା—ତଞ୍ଚଳ ଓହ୍ଲେଇ ଯା କହୁଛି, ନହେଲେ ଧକ୍କାଦେଇ ତଳକୁ ପେଲିଦେବି ।”

କଣ୍ଡକ୍ଟରଠୁଁ ଏଇ କଥା ପଦକ ଶୁଣି ପ୍ରଶାନ୍ତ ଏକଦମ୍ ରାଗରେ ତାତିଗଲା । ସେ କଣ୍ଡକ୍ଟର ଆଗକୁ ମାଡ଼ିଯାଇ କହିଲା—କଣ୍ଡକ୍ଟରବାବୁ, ଆପଣ କଣ ନିଜ ମା'ଙ୍କୁ ଏମିତି କଥା କହନ୍ତେ ?”

ଏ କଥାରେ କଣ୍ଡକ୍ଟର କି ଥୟ ଧରେ । ସେ ରାଗରେ ପାଛିଯାଇ କହିଲା—“ତୁ କିଏ ରେ ଟୋକା ? ଭାରି ତ ଭଦ୍ରଲୋକ ଦେଖେଇ ହଉଛୁ ! ବୁଢ଼ୀ ପାଇଁ ଯଦି ତୋର ଏତେ ଦୟା, ତା ହେଲେ ତା ପାଇଁ ପଇସା ଦେଇ ଦେଉନୁ ?”

ପ୍ରଶାନ୍ତ ବି ସେମିତି ଟିକେ ଆଣ୍ଠରେ କହିଲା—“ହଁ ଦଉଚି; ଏତିକି କହି ପକେଟରୁ ସେଇ ପାଞ୍ଚଟଙ୍କିଆ ନୋଟଟି ବାହାର କରି କଣ୍ଡକ୍ଟର ହାତକୁ ବଢ଼ାଇଦେଲା ।

ଯେଉଁ କଣ୍ଡକ୍ଟର ଏଇ ଟିକକ ଆଗରୁ ବୁଢ଼ୀ ଉପରେ ଏତେ ତୋଡ଼ ଦେଖାଉଥିଲା, ଟଙ୍କା ପାଇଗଲାପରେ ଏକଦମ୍ ନରମ ହୋଇଗଲା ।

ଏଥର ପ୍ରଶାନ୍ତ ଟିକେଟ ଏବଂ ବଳକା ପଇସାତକ ବୁଢ଼ୀ ହାତରେ ଦେଇ କହିଲା—"ମା', ଏତକ ପଇସା ପାଖରେ ରଖିଥାଅ, ଦରକାର ହେଲେ ଖର୍ଚ୍ଚ କରିବ ।"



ବୁଢ଼ୀ ପ୍ରଶାନ୍ତର ହାତଟି ଧରି ପକାଇ କାନ୍ଦ କାନ୍ଦ କହିଲା—"ବାପ, ଭଗବାନ ତୋତେ କୋଟି ପରମାୟୁ ଦେଇଥାନ୍ତୁ । ତୁ ଯୁଗଯୁଗକ ଭୋଗ କର । ବଡ଼ ମଣିଷ ହୁଅ ।" ଏତକ କହି ସେ ନିଜ ଶାଗ ପଣତ କାନରେ ଲୁହ ପୋଛିଲା ।

ସେତେବେଳକୁ ବସ୍ ଚାଲିବାକୁ ଆରମ୍ଭ କଲାଣି । ପ୍ରଶାନ୍ତ ଦେଖିଲା ବସ୍‌ର ସମସ୍ତେ ପ୍ରାୟ ତାରି ଆଡ଼କୁ ଚାହିଁଛନ୍ତି । କିନ୍ତୁ ସେଠ୍ କରୋଡ଼ି ମଲ୍ଲ ଆଉ ଓକିଲ ନରେନ୍ଦ୍ର ବାବୁ ତଳକୁ ମୁହଁ ପୋତି ବସି ରହିଛନ୍ତି । ସତେ ଯେମିତି ସେମାନେ ତା ମୁହଁକୁ ଚାହିଁବାକୁ ସାହସ କରିପାରୁନାହାନ୍ତି ।

ପ୍ରଶାନ୍ତ ମନକୁ ମନ ଭାବିଲା—ଭଲ କାମରେ ଖର୍ଚ୍ଚ କରିବାକୁ ମାମୁଁ ଟଙ୍କା ଦେଇଥିଲେ । ନିଆଶ୍ରୀ ବୁଢ଼ୀକୁ ସାହା ହେବା କଣ ଗୋଟାଏ ଭଲ କାମ ନୁହେଁ ?




ସୁମନକୁ ନରେନ୍ଦ୍ରପୁର ଗାଁରେ ନ ଜାଣେ କିଏ ? ତାର ରୂପ ଯେପରି, ଗୁଣ ମଧ୍ୟ ସେହିପରି ଉତ୍ତମ । ସେ ପଢ଼ିଲାବେଳେ ପଢ଼େ, ଖେଳିଲା-ବେଳେ ଖେଳେ । ପ୍ରତିଦିନ ନିୟମିତ ସ୍କୁଲକୁ ଠିକ୍ ସମୟରେ ଯାଏ । ତାର ପଢ଼ା ଓ ବ୍ୟବହାରରେ ସ୍କୁଲ ଶିକ୍ଷକମାନେ ଖୁସି ହୋଇ ତାକୁ ଆଦର କରନ୍ତି ।

ଗରିବ, ଦୁଃଖୀ ଲୋକଙ୍କ ପ୍ରତି ତାର ଭାରି ଦରଦ । ଭିକାରି ଦେଖିଲେ ଘରକୁ ଡାକିଆଣି ଖାଇବାକୁ ଦିଏ । ଅନ୍ଧ ଦେଖିଲେ ବାଟ କଢ଼ାଇ-ଦିଏ । ଛୁଟି ଦିନମାନଙ୍କରେ ସାଙ୍ଗସାଥୀ ପିଲାମାନଙ୍କୁ ମେଳେଇ ଗାଁ, ପୋଖରି ଓ ରାସ୍ତା ସଫା କରାଏ । ଗାଁର ପୁଅଝିଅଙ୍କୁ ନିଜ ଭାଇଭଉଣୀ ଭାବି ଚଳେ ।

ଘରେ ବାପା, ମାଆ, ବଡ଼ଭାଇ ଓ ଭଉଣୀମାନଙ୍କୁ ଭକ୍ତି କରେ । ତାଙ୍କ କଥାକୁ ମାନି ଚଳେ । ସମୟ ଟିକିଏ ପାଇଲେ ମାଆଙ୍କଠାରୁ

ରାମାୟଣ, ମହାଭାରତ ପୁରାଣ ଗପ ଇତ୍ୟାଦି ଶୁଣେ । ଘର ବାଡ଼ିବଗିଚା କାମରେ ମଧ୍ୟ ବାପା ମାଆଙ୍କୁ ସାହାଯ୍ୟ କରେ ।

ସୁମନ ତାଙ୍କ ଗାଁ ସ୍କୁଲର ଷଷ୍ଠ ଶ୍ରେଣୀରେ ପାଠ ପଢ଼େ । ଶ୍ରେଣୀରେ ପ୍ରଥମ ହୁଏ । ବାର୍ଷିକ ପରୀକ୍ଷା ଚାଲିଥାଏ । ଦିନେ ସେ ସ୍କୁଲକୁ ପରୀକ୍ଷା ଦେବାକୁ ଯାଉଥାଏ । ଅଳ୍ପ ସମୟ ଅଛି, ତେଣୁ ତରବର ହୋଇ ସ୍କୁଲକୁ ଯାଉଛି । ଏହି ସମୟରେ ରାସ୍ତାରେ ଦେଖିଲା ଭିକାରୀଟିଏ ପାଟିକରି ବିକଳରେ କହୁଛି "ବାବୁ ମୁଠିଏ ଖାଇବାକୁ ମିଳୁ । ଦୁଇ ଦିନ ହେଲା କିଛି ଖାଇନାହିଁ । ଦୟା ଟିକିଏ କର । ଭିକାରୀ କଥା ଶୁଣି ସୁମନ ମନରେ ଭାରି ଦୟା ଆସିଲା । ସ୍କୁଲରେ କିଣି ଖାଇବା ପାଇଁ ବାପା ପଇସା ଦେଇଥିଲେ । ସେ ପଇସା ଦେଇ ଦୋକାନରୁ କିଛି ଖାଇବା ଜିନିଷ କିଣିଆଣି ଭିକାରୀଟିକୁ ଖାଇବାକୁ ଦେଲା । ତାପରେ ଡେରିହେଲା ଭାବି ଲମ୍ବା ଲମ୍ବା ପାହୁଣ୍ଡ ପକାଇ ସ୍କୁଲକୁ ଚାଲିଲା ।

କିଛି ବାଟ ଯାଇଛି ସୁମନର ପାଦ ଶବ୍ଦ ଶୁଣି ଜଣେ ଅନ୍ଧ କେହି ଧାଖରେ ଯାଉଥିବା ଜାଣି କହିଲା—"ବାବୁ ! କିଏ ଯାଉଛ ? ମୋତେ ଟିକିଏ ସାହାଯ୍ୟ କର । ରାମବାବୁଙ୍କର ଘରେ ଟିକିଏ ଦୟାକରି ପହଞ୍ଚାଇ ଦିଅ ତ ?" ଏକଥା ଶୁଣି ସୁମନର ପାଦ ଆଉ ଆଗକୁ ବଢ଼ିଲା ନାହିଁ । ମନ ମଧ୍ୟ ତାର ଅସ୍ଥିର ହେଲା । ଏପାଖେ ସ୍କୁଲ ପରୀକ୍ଷା ଡେରି ହେଲାଣି । ଏଣେ ଅନ୍ଧକୁ ସାହାଯ୍ୟ ନ କଲେ ଅନ୍ୟାୟ ହେବ । ଶେଷରେ ଅନ୍ଧ ବ୍ୟକ୍ତିଙ୍କର ହାତ ଧରିନେଇ ଗାଁର ରାମବାବୁଙ୍କ ଘରେ ଛାଡ଼ିଦେଇ ଆସିଲା । ଖୁସିରେ ଅନ୍ଧ ଜଣକ କଲ୍ୟାଣ କଲେ ସୁମନକୁ । ସୁମନ ବେଗରେ ସ୍କୁଲକୁ ଚାଲିଲା ।

ଏଣେ ଶ୍ରେଣୀ ଶିକ୍ଷକ ସୁମନ ନ ଆସିବା ଦେଖି ଭାରି ବ୍ୟସ୍ତ ହୋଇ ପଡ଼ିଲେଣି । ମନେ ମନେ ଭାବିଲେ ସୁମନ କଣ ଜାଣେନା ଏଟା ବାର୍ଷିକ ପରୀକ୍ଷା । ଏହି ପରୀକ୍ଷା ଫଳକୁ ନେଇ ତାର କୃତିତ୍ୱର ସ୍ଥାନ ନିରୂପିତ ହେବ । କିଛି ନୋହିଲେ ତ ଉପର ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେବ । ସେ ତ ଏପରି ଅବାଧ୍ୟ ନୁହେଁ, କାହିଁକି ଆସିନି ! ଏହିପରି ମନରେ ଅନେକ ପ୍ରଶ୍ନ । ସେ କଣ ପରୀକ୍ଷା ଦେବ ନାହିଁ ?

କିଛି ସମୟ ପରେ ସୁମନ ଝାଳନାଳ ହୋଇ ଆସି ସ୍କୁଲରେ ପହଞ୍ଚିଲା । ସେତେବେଳକୁ ପରୀକ୍ଷା ଅଧଘଣ୍ଟାଏ ଚାଲିଗଲାଣି । ଶ୍ରେଣୀ ଶିକ୍ଷକ ସୁମନକୁ ଦେଖି ଭାରି ଖପ୍ପା । ରାଗିକରି ତାର ଡେରି ହେବାର କାରଣ ପଚାରି ବୁଝିଲେ ।



ଉତ୍ତର ନମ୍ରରେ ଯାହାସବୁ ଘଟଣାମାନ ବାଟରେ ଘଟି ଯାଇଥିଲା ସବୁ ଶିକ୍ଷକଙ୍କୁ ଜଣାଇଦେଲା । ସବୁ କଥା ଶୁଣିସାରି ଶିକ୍ଷକ ସୁମନକୁ ଖୁସିରେ କୋଳେଇ ନେଲେ । କହିଲେ—"ତୁମେ ଭଗବାନଙ୍କ ପାଖରେ ଅସଲ ପରୀକ୍ଷା ଦେଇସାରି ଆସିଛ । ଏ ଯେଉଁ ଶ୍ରେଣୀ ଉତ୍ତୀର୍ଣ୍ଣ ପରୀକ୍ଷା, ଏହାଦ୍ୱାରା ତୁମେ ଉଚ୍ଚଶିକ୍ଷିତ ହୋଇପାର, ଭବିଷ୍ୟତରେ ବଡ଼ଚାକିରି କରିପାର, ଟଙ୍କା ରୋଜଗାର କରି ଧନୀ ହୋଇପାର, ନେତା ହୋଇପାର । ମାତ୍ର ତୁମେ ଯେଉଁ ମହତ କାମ କରିଛ, ମଣିଷ ଉପର ମଣିଷପଣ ହେବ ତୁମେ ଭଗବାନଙ୍କ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଆସିଛ ।

ଶିକ୍ଷକ ଖୁସି ହୋଇ ସୁମନକୁ ଆଶୀର୍ବାଦ ଦେଲେ, "ତୁମେ ନିଶ୍ଚୟ ଭବିଷ୍ୟତରେ ବଡ଼ଲୋକ ହେବ" ଏବଂ ତାକୁ ଅଧିକ ସମୟ ବଢ଼ାଇଦେଇ ପରୀକ୍ଷା ଦେବାକୁ କହିଲେ । ସୁମନ ମନଲଗାଇ ପରୀକ୍ଷା ଦେଲା । ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହେଲା । ପରେ ପରେ ସେ ଉଚ୍ଚଶିକ୍ଷିତ ହୋଇ ଜୀବନରେ ଉଚ୍ଚ ଆସନ ପାଇ ସମସ୍ତଙ୍କଠାରୁ ପୂଜା ପାଇଲା ।

# ସାଙ୍ଗପରି ଗୁରୁ ନାହିଁ

ଡ଼ଃ ମନୀନ୍ଦ୍ର ମହାନ୍ତି



ସେଦିନ ଶିଶୁଦିବସ ।

ତୁମେ ତ ସବୁ ଜାଣ, ପ୍ରତିବର୍ଷ ନଭେମ୍ବର ଚଉଦ ତାରିଖକୁ ଭାରତର ପ୍ରଥମ ପ୍ରଧାନ ମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ଜନ୍ମଦିନକୁ 'ଶିଶୁଦିବସ' ଭାବରେ ପାଳନ କରାଯାଉଛି । ସେଦିନ ନେହେରୁଙ୍କ ଫଟୋରେ ଫୁଲମାଳ ଦିଆହୋଇ ସଭା ଆରମ୍ଭ ହେଲା । ହେଡ଼ମାଷ୍ଟ୍ରେ ନେହେରୁଙ୍କ ଜୀବନର ପିଲାଦିନର ବହୁ କଥା କହି ବକ୍ତୃତା ଦେଲେ । ସମସ୍ତେ ତାଙ୍କପରି ହେବାକୁ ଉପଦେଶ ଦେଲେ ।

ପଟଲୁ ତାର ସାଙ୍ଗ ମଣ୍ଟୁକୁ ଧରି ସଭା ପଛରେ ବସି ବକ୍ତୃତା ଶୁଣୁଥିଲା । ହେଲେ ସେ ବକ୍ତୃତା କଅଣ ଶୁଣୁଛି ? ସେ ଅପେକ୍ଷା କରୁଛି— ସଭା ସରିଲେ କେତେବେଳେ ମିଠେଇ ବଣ୍ଟାଯିବ । ତା ମନ ଆଉ କଥାରେ ଲଗୁନାହିଁ ।

ସଭା ଶେଷ ହେଲା ।

ହେଡ଼୍‌ମାଷ୍ଟ୍ରେ ପିଲମାନଙ୍କୁ କହିଲେ—"ଆର ପାଖ ରୁମ୍‌ରେ ମିଠେଇ ବଣ୍ଟାଯାଉଛି । ତୁମେ ସବୁ ଗୋଟିଏ ଲେଖାଏଁ ଠୁଙ୍ଗା ନେଇକରି ଯିବ । ଦେଖ, କେହି ଗୋଳମାଳ କରିବ ନାହିଁ ।" ପିଲମାନେ ସମସ୍ତେ ଉଠିଲେ । ପାଖ ଘର ଆଗ ବାରଣ୍ଡାରେ ଧାଡ଼ି ହୋଇ ଠିଆ ହୋଇଗଲେ । ପପ୍‌ଲୁ ସବା ଆଗେ । ମଣ୍ଟୁ କିନ୍ତୁ ବହୁତ ପଛରେ ପଡ଼ି ରହିଥିଲା । କିନ୍ତୁ ସମୟପରେ ଦେଖାଗଲା ପପ୍‌ଲୁ ଥରେ ମିଠେଇ ଠୁଙ୍ଗା ନେଇ ଖାଇସାରିବା ପରେ ଆଉ ଥରେ ପୁଣି ଧାଡ଼ି ମଝିରେ ପଶିଗଲା । ତାକୁ ବା କହିବ କିଏ ? କାରଣ ସେ ହେଉଛି ହେଡ଼୍‌ମାଷ୍ଟରଙ୍କର ପୁଅ । ଗୁଣ୍ଡା ପ୍ରକୃତିର ପିଲା ସେ । ସମସ୍ତେ ତାକୁ ଡରନ୍ତି । ଯାହା ଆଗରେ ସେ ଠିଆହେଲା, ସେ ଯେମିତି ପାଟିକରି ଉଠିଛି, ପପ୍‌ଲୁ ଆଖି ଦେଖେଇ ଫୁସ୍ ଫୁସ୍ କରି କହିଲା—"ଏଇ



ଚୁପ୍—ପାଟି କରନା, ଗୋଟେ ବିଧାରେ ଦାନ୍ତ ଦି'ଟା ଝଡ଼େଇ ଦେବି ।" ଉତ୍ତରରେ ପଛପିଲା ଆଉ କହିବ କଅଣ ? ହେଡ଼ମାଷ୍ଟରଙ୍କ ପୁଅ । କପାଳକୁ ଆଦରି ସେ ଚୁପ୍ ହୋଇଗଲା ।

ମଣ୍ଟୁ କିନ୍ତୁ ଏ ସବୁ ଦେଖି ରାଗି ଉଠିଲା । କହିଲା—"ଦେଖ ପପ୍‌ଲୁ, ତୁ ଯଦି ଧାଡ଼ିରୁ ବାହାରି ନ ଯାଉ, ତା ହେଲେ ମୁଁ ବି ଧାଡ଼ିରୁ ବାହାରିଯିବି । ମିଠେଇ ପିଠେଇ କିଛି ଖାଇବି ନାହିଁ ।" ମଣ୍ଟୁ ଜାଣେ ପପ୍‌ଲୁ ତା କଥା ମାନିବ । କାରଣ, ଦୁହେଁ ଏକାଠି ପଢ଼ନ୍ତି । ପପ୍‌ଲୁକୁ ଅଙ୍କ ନ ଆସିଲେ ମଣ୍ଟୁ ତାକୁ ବୁଝେଇଦିଏ । କେତେଥର ସେ ମଣ୍ଟୁ ପାଇଁ ସାର୍‌ଙ୍କଠାରୁ ମାଡ଼ ଖାଇବାରୁ ମଧ୍ୟ ବଞ୍ଚି ଯାଇଛି ।

ମଣ୍ଟୁର ଏ କଥା ଶୁଣି ପପ୍‌ଲୁ ନ ଶୁଣିଲାପରି ଆଗ ପିଲାଟି ସହିତ କଥାବାର୍ତ୍ତାରେ ଲାଗିଥାଏ । ମଣ୍ଟୁ ପୁଣି ଥରେ ପପ୍‌ଲୁକୁ କହିଲା, ହେଲେ ସେ ତା କଥା କାନକୁ ନେଉ ନ ଥାଏ । ଏଥର ମଣ୍ଟୁ କାହାରିକୁ କିଛି ନ କହି ଚୁପ୍ କରି ଧାଡ଼ିରୁ ବାହାରି ଆସି ଗେଟ୍ ଦେଇ ସଡ଼କକୁ ଉଠିଲା । ପପ୍‌ଲୁ ଦେଖୁଥାଏ । ସେ ମଣ୍ଟୁକୁ ଯେତେ ଡାକିଲା ତା କଥା ସେ ମୋଟେ ଶୁଣିଲା ନାହିଁ । ପପ୍‌ଲୁ କହିଲା—"ଆହା, ରାମଚନ୍ଦ୍ର ତ ! କେତେ କେତେ ପିଲା ଦ'ତିନଥର ଲେଖାଏଁ ଖାଇ ଯାଉଛନ୍ତି । ଆଉ ମୁଁ ଆସି ଠିଆ ହେଲା ବେଳକୁ ଧେତ୍—" ମଣ୍ଟୁ କିନ୍ତୁ ଏକମୁହାଁ ହୋଇ ଘରକୁ ଫେରୁଥାଏ ।

କିଏ ଜଣେ ପିଲା ବଡ଼ ପାଟିରେ କହି ଉଠିଲା—"ସାର୍, ପପ୍‌ଲୁ ଥରେ ମିଠେଇ ଖାଇ ସାରି, ଆଉ ଥରେ ଧାଡ଼ିରେ ଠିଆ ହୋଇଛି ।" କିଏ ସେ କହିଲା ? କିନ୍ତୁ କିଏ ଯେ କହିଲା, ତାର ଠିକଣା ମିଳିଲା ନାହିଁ । ଧରା ପଡ଼ିଲେ ବାପା ତ ଏଇଠି ଅଛନ୍ତି, ଗାଳିଦେବେ । ତେଣୁ ସେ ପରସ୍ତା କରି ଅସୁଛି କହି ଦେଏ.ଛି—

ସିଧା ଆସି ମଣ୍ଟୁକୁ ସଡ଼କରେ ଅଟକାଇଲା । ମଣ୍ଟୁ ତାକୁ କଥା ନ କହି ବାଟ କାଟି ଆଗେଇଲା । ପପ୍‌ଲୁ କହିଲା—"ଆରେ, ତୁ ପରା ମୋ ସାଙ୍ଗ ? ତୁ ମୋତେ ସାହାଯ୍ୟ କରିବୁ କଅଣ ନା ଓଲଟି ମୋତେ ଧରା ପକେଇ ଦେଉଛୁ ? ବର୍ଷେ ଆସି ଅଧେ ଯିବାକୁ ବସିଲା । ସ୍କୁଲରୁ ଫୁଟ୍‌ବଲ କି ଭଲିବଲ୍ ଟାଏ ମିଳିଲା ନାହିଁ । ମୋରି ଯୋଗୁଁ ତୁମେ ସବୁ ଦ' ଦିଟା ବଲ୍ ପାଇଲ । ମୁଁ ଯାଇ ସାର୍‌ଙ୍କ ଆଗରେ ପାଟିକଲି, ବାପାଙ୍କଠୁଁ ଗାଳି ଶୁଣିଲି, ହେଲେ ମାସେ ନ ପୂରୁଣୁ ତୁମେ ସବୁ ମୋରି କାଳ ପାଲଟିଗଲ ?

ମଣ୍ଟୁ ଏଥର ପାଟି ଖୋଲିଲା—"ତୁ ଭାବୁଛୁ କଣ ତୋର ସବୁ କାମକୁ ଆମେ ଭଲ ବୋଲି କହିବୁଁ ? ଆମକୁ ଡର ଲାଗୁଥିଲା । କିନ୍ତୁ ତୁ ତ ହେଡ୍‌ମାଷ୍ଟରଙ୍କ ପୁଅ । ତୋର ଡର କଅଣ ? ଆଉ ତୋରି ପାଇଁ ଆମେ ଫୁଟ୍‌ବଲ୍, ଭଲିବଲ୍ ଖେଳିବାକୁ ପାଇଲୁଁ । ତୋତେ ସେଥିପାଇଁ ପ୍ରଶଂସା କରିବୁଁ । ହେଲେ ଆଜି ତୁ ଯେଉଁ ଖରାପ କାମ କଲୁ, ତୁ ଭାବୁଛୁ କଅଣ ତାକୁ ଆମେ ମାନିନେବୁଁ ? ନା କଦାପି ନୁହେଁ ।"

ପପ୍‌ଲୁ କହିଲା—"ତୁମ ପାଇଁ ମୁଁ ଏତେ କାମ କଲି, ତୁମେ ଏତିକ ମୋ ପାଇଁ ସହିପାରୁନ ? ତୁମ ହାତରୁ ବା କଅଣ ଯାଉଚି ? ମୁଁ ତ ସ୍କୁଲରୁ ମିଠେଇ ପକେଟ ନେବି, ତୁମେମାନେ ଟିକେ ଚୁପ୍ ହେଇଗଲେ ସବୁ ସରିଥାନ୍ତା ।"

—"ତୁ ଭଲକାମ କଲେ ଆମେ ସବୁ ତୋତେ ସମର୍ଥନ କରିବୁ । ତୋତେ ପ୍ରଶଂସା କରିବୁ । ହେଲେ ଖରାପ କାମ କଲେ, ଯେତେ ସାଙ୍ଗ ହେଲେ କଅଣ ହେବ ସମର୍ଥନ କରିବୁ ନାହିଁ, ନିନ୍ଦା କରିବୁ, ବାରଣ କରିବୁଁ ।" ଏତିକି କହି ମଣ୍ଟୁ ନିଜ ବାଟରେ ଆଗେଇଲା ।

ପପ୍‌ଲୁ ଆଗରୁ କେତେ ଶକ୍ତିମାନ୍ ବୋଲି ଭାବୁଥିଲା, କିନ୍ତୁ ହଠାତ୍ ସେ ସବାପଛରେ ଏକୁଟିଆ ପଡ଼ିଯିବା ପରି ତାକୁ ଲାଗିଲା । ଯେଉଁ-ମାନେ ନେତା ବୋଲି ତାକୁ ଧନେ ମାନୁଥିଲେ, ଆଜି ତାକୁ କେହି ହେଲେ ପଚାରୁନାହାନ୍ତି । ସେ ମନେ ମନେ ଶପଥ କଲା, ଆଉ ସେ ଏମିତି କରିବ ନାହିଁ ।

ସତରେ, ସାଙ୍ଗଠାରୁ ଗୁରୁ ନାହିଁ !!

# ସେମାନେ ଅନାଥ ନୁହଁନ୍ତି



ଦିଗରାଜ ବ୍ରହ୍ମା

ଅଜୟ ଓ ଅରୁଣ ଦୁଇ ଭାଇ । ଅଜୟ ଅରୁଣଠାରୁ ପାଞ୍ଚ ବରଷ ବଡ଼ । ଅନେକ ସମୟରେ ଅଜୟ ଅରୁଣକୁ ସାଙ୍ଗରେ ଧରି ସନ୍ଧ୍ୟାବେଳେ ବୁଲୁଥାଏ । ବୁଲିବା ସମୟରେ ସେ ଅରୁଣକୁ ଦେଶ ବିଦେଶର କଥା ଶୁଣାଏ, ପୁଣି ବେଳେ ବେଳେ ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର ଓ ପଣ୍ଡିତ ଗୋଦାବରୀଶ ପ୍ରଭୃତି ବଡ଼ ମଣିଷଙ୍କ ପିଲାଦିନର କାହାଣୀମାନ ମଧ୍ୟ କହୁଥାଏ ।

ଆଉ ଅରୁଣ ?

ତାର ଏ ଦେଶବିଦେଶର କାହାଣୀ ଶୁଣିବାରେ କି ଆନନ୍ଦ ! ଦେଶବିଦେଶର ଲୋକଙ୍କ କଥା ଓ କାହାଣୀ ଶୁଣି ତାର ମନ ସମୁଦ୍ରର ନୀଳ ଲହଡ଼ି ପରି ଆନନ୍ଦରେ ନାଚି ଉଠେ । ସେ କୁହେ, "ଭାଇ ! ତୁମେ ତ ସବୁବେଳେ ଦେଶବିଦେଶର କାହାଣୀ ଶୁଣାଉଛ । ବଡ଼ ମଣିଷଙ୍କ ଜୀବନୀ

ମଧ୍ୟ କହୁଛ । ସେ ସବୁ ଶୁଣି ମୁଁ ମଣିଷର ଭଲ-ମନ୍ଦ, ସୁଖ-ଦୁଃଖ, ନ୍ୟାୟ-ଅନ୍ୟାୟ କଥାସବୁ ଜାଣିପାରୁଛି । ପୁଣି ବିଶ୍ୱଦେବତାଙ୍କ ହୃଦୟର ବାଣୀ ମଧ୍ୟ ଅନୁଭବ କରିପାରୁଛି ।

ଅରୁଣରେ କଥା ନ ସରିବା ପୂର୍ବରୁ ନିକଟସ୍ଥ ଅନାଥ ଆଶ୍ରମ ନିକଟରୁ ଭାସି ଆସିଲା ପିଲାମାନଙ୍କର ସନ୍ଧ୍ୟାକାଳୀନ ପ୍ରାର୍ଥନା : ବିଶ୍ୱ ଜୀବନ ହେ ତୁମ୍ଭଙ୍କୁ କରୁଣାସିନ୍ଧୁ...

ଅଜୟ କହିଲା, "ଅରୁଣ ! ଶୁଣୁଛୁ; ତୁ ଏଇମାତ୍ର ବିଶ୍ୱଦେବତାଙ୍କ କଥା କହୁଥିଲୁ । ବର୍ତ୍ତମାନ ଅନାଥ ଆଶ୍ରମର ପିଲାମାନେ ସେଇ ବିଶ୍ୱକର୍ତ୍ତା କରୁଣାମୟ ଭଗବାନଙ୍କ ଜୟଗାନ କରୁଛନ୍ତି ।" ଅରୁଣ ପଚାରିଲା—ଅନାଥ ଆଶ୍ରମର ପିଲାମାନେ ! ସେମାନେ କ'ଣ ପ୍ରକୃତରେ ଅନାଥ ଭାଇ ?

ଅଜୟ କହିଲା—ଅରୁଣ ! ଚାଲ ଯିବା ଆଶ୍ରମ ବୁଲି ଆସିବା । ତା' ହେଲେ ତୁ ସବୁ କଥା ଜାଣି ପାରିବୁ ।

ଅଜୟ ଓ ଅରୁଣ ଅନାଥ ଆଶ୍ରମ ଭିତରକୁ ଗଲେ । ସେତେବେଳକୁ ପିଲାମାନଙ୍କର ପ୍ରାର୍ଥନା ସରି ଆସିଥାଏ । ପିଲାମାନେ ନିଜ ନିଜର ସ୍କୁଲପଢ଼ା କରିବାପାଇଁ ବହିପତ୍ର ଖୋଲି ବସୁଥାନ୍ତି । ଅଜୟ ଓ ଅରୁଣଙ୍କୁ ଦେଖି ସେମାନେ ବହୁତ ଖୁସି ହେଲେ । ଦୁଇ ଭାଇଙ୍କ ବସିବା ପାଇଁ ସେମାନେ ସପଟିଏ ପକାଇଦେଲେ ।

ଅରୁଣ ଜଣେ ପିଲାକୁ ପଚାରିଲା—ତୁମର ଏଠାରେ କିଏ ଅଛନ୍ତି ?

ପିଲାଟି କହିଲା—ବାପା ଅଛନ୍ତି । ସେ ଆମର ଭଲମନ୍ଦ ସବୁ ବୁଝୁଛନ୍ତି । ଏପରିକି ଆମ ଭିତରୁ କିଏ ରୋଗରେ ପଡ଼ିଲେ ନ ଖାଇ ନ ପିଇ ଆମର ସେବା କରୁଛନ୍ତି ।

ଅରୁଣ ପଚାରିଲା—ତୁମର ବାପାବୋଉ ?

ଅରୁଣର ପ୍ରଶ୍ନ ଶୁଣି ପିଲାଟିର ଆଖି ଛଳ ଛଳ ହୋଇଗଲା । ସତେ ଯେମିତି ଗଙ୍ଗା ଓ ଯମୁନାର ଦୁଇଧାର ତା' ଆଖିରୁ ଝରି ଆସିଲା ।

କିଛି ସମୟପରେ ପିଲାଟି ନିଜେ ନିଜକୁ ସାନ୍ତ୍ୱନା ଦେଲାପରେ କହିଲା—କୁନବାବୁ ! ମୋର ବାପା ବୋଉ ନାହାନ୍ତି । ସେମାନେ ଥିଲେ ମୁଁ କାହିଁକି ଅନାଥ ଆଶ୍ରମରେ ଥାଆନ୍ତି ?



ଅରୁଣର ଆଖି ମଧ୍ୟ ଛଳ ଛଳ ହୋଇଗଲା । ସେ ଅଜୟ ପ୍ରତି ଲକ୍ଷ୍ୟକରି କହିଲା—ଭାଇ ! ଚାଲ ଯିବା । ଆଉ କେବେ ସମୟ ହେଲେ ଆମେ ବୁଲି ଆସିବା ।

ପିଲାମାନଙ୍କଠାରୁ ଅଜୟ ଓ ଅରୁଣ ଦୁହିଁ ବିଦାୟ ନେଲେ । ଆଶ୍ରମକୁ ଅଳ୍ପ କେଇଦିନ ତଳେ ଆସିଥିବା ପିତୃମାତୃହୀନ ପିଲାଟି ଅଜୟ ଓ ଅରୁଣ ଆଡ଼କୁ ଚାହିଁଲା ଓ କହିଲା, "କୁନୁଭାଇ ! ତୁମେ ଆଉ ଥରେ ଆସିବ ନା ?"

ଅରୁଣ କହିଲା, "ହଁ, ମୁଁ ଆଉ ଥରେ ଆସିବି ।"

ଅଜୟ ଓ ଅରୁଣ ଫେରିଲେ । ପିଲାମାନଙ୍କର ବାପା ବୋଉ ନଥିବା କଥା ଅରୁଣ ମନରେ ସବୁବେଳେ ଗୋଳେଇ ଘାଣ୍ଟି ହେଲା । ସେ କେତେ

କ'ଣ ଭାବନ୍ତି ? ତା'ର ଯଦି ବାପା ବୋଉ ନଥାନ୍ତେ, ତେବେ ସେ ତ ଯାଇ ଅନାଥ ଆଶ୍ରମରେ ରହିଥାନ୍ତା । ତା'ର ସବୁଠାରୁ ବେଶି ରାଗ ହେଲା ଭଗବାନଙ୍କ ଉପରେ । ସେ କହିଲା—ଭାଇ ! ଭଗବାନ ପରା କରୁଣାମୟ । କିନ୍ତୁ ସେଇ କରୁଣାମୟ ସେମାନଙ୍କୁ ଅନାଥ କରିଦେଲେ କାହିଁକି ? ସେମାନଙ୍କର ତ କେହି ସାହାଭରସା ନାହାନ୍ତି । ସେମାନେ କ'ଣ ନିଜ ଗୋଡ଼ରେ ନିଜେ ଠିଆ ହୋଇ ମଣିଷ ହେବେ ନାହିଁ ?

ଅରୁଣର କଥା ଶୁଣି ଅଜୟ କହିଲା—ଅରୁଣ । ଈଶ୍ୱର ପ୍ରକୃତରେ କରୁଣାମୟ । ଆମେ ସିନା ସେମାନଙ୍କୁ ଅନାଥ କହୁଚୁ, ମାତ୍ର ଆମର ସେପରି ଧାରଣା ଭୁଲ୍ । ଭଗବାନ ଯାହାକୁ ଜନ୍ମ ଦେଇଛନ୍ତି, ତାକୁ ମଧ୍ୟ ବଞ୍ଚିବାର ଅଧିକାର ଦେଇଛନ୍ତି । ତୁ ତ ଦୂବଘାସଟିକୁ ଦେଖୁଥିବୁ । କେତେ ଲୋକ ସେହି ଘାସଟିକୁ ମାଡ଼ି ଦଳି ଦେଉଛନ୍ତି । ତଥାପି ଦୂବ ଘାସଟି ତ ଶୀତ, ବର୍ଷା, ଖରା, ସହି ବଂଚି ଉଠୁଛି ।

ସେମାନେ ସତରେ କ'ଣ ଅନାଥ ନୁହନ୍ତି ? —ଅରୁଣ ପଚାରିଲା ।

ଅଜୟ କହିଲା—ଅରୁଣ ! ସେମାନଙ୍କର ବାପାବୋଉ ନାହାନ୍ତି । ସେମାନେ ଅନାଥ, ଅସହାୟ । ଆମର ବାପାବୋଉ ଥାଇ ମଧ୍ୟ ଅନେକ ସମୟରେ ଆମେ ଅସହାୟ ମନେକରୁଛୁ । ମାତ୍ର ଈଶ୍ୱର ହେଉଛନ୍ତି ଆମ ସମସ୍ତଙ୍କର ବାପାବୋଉ ପରି । ଆମେ ରୋଗରେ ପଡ଼ିଲେ, ଦୁଃଖରେ ପଡ଼ିଲେ, ସେହି କରୁଣାମୟ ଈଶ୍ୱରଙ୍କୁ ଡାକୁ । ଦୁଃଖ କଷ୍ଟରେ ପଡ଼ିଲାବେଳେ ଆମର ଅବସ୍ଥା କ'ଣ ଅନାଥ ପିଲାଙ୍କ ପରି ନୁହେଁ ? ପୁଣି······

ପୁଣି କଣ ଭାଇ ? —ଅରୁଣ ପଚାରିଲା ।

ଅଜୟ କହିଲା—ସେଇ ଈଶ୍ୱରହିଁ ଆମର ଆଶା ଓ ଭରସା । ସେ ଆମ ମନରେ ଦୁଃଖ ସମୟରେ ଦମ୍ଭ ଓ ସାହସ ଦିଅନ୍ତି । ଅଧୈର୍ଯ୍ୟ ସମୟରେ ଧୈର୍ଯ୍ୟ ଦିଅନ୍ତି । ମନରୁ ଆମର ଗୋଟିଏ ଆଶା ହଜିଲେ ଗୋଟିଏ ଆଶା ହୋଇ ସେ ଆମ ଆଗରେ ସତେ ଯେମିତି ଦେଖାଦିଅନ୍ତି । ତେଣୁ ତାଙ୍କ ଦୁନିଆରେ ପୁଣି ଅନାଥ କିଏ··· ?

ବଡ଼ଭାଇଙ୍କ କଥା ଶୁଣି ଅରୁଣ କହିଲା—ବଡ଼ଭାଇ ! ପ୍ରକୃତରେ ସେହି ଅନାଥ ଶିଶୁମାନେ କ'ଣ ଅନାଥ ନୁହନ୍ତି ?

ଅଜୟ କହିଲା—ହଁ ଅରୁଣ, ସେମାନେ ଅନାଥ ନୁହଁନ୍ତି । ସେମାନେ ଦିନେ ବଡ଼ ମଣିଷ ହେବେ, ଦୁନିଆରେ ନିଜ ଗୋଡ଼ରେ ନିଜେ ଠିଆ ହେବେ, ଆମର ଏପରି ଆଶା ପୋଷଣ କରିବା ଉଚିତ ହେବ ।

ସତ କଥା ଭାଇ—ଅରୁଣ ହସି ହସି କହିଲା ।

# ଖୁଣ୍ଟାକୁ ନମଣ୍ଟା ଦୀନ

ରଘୁନାଥ ରାଉତ



ଟିକିକ କଥାରେ ସମସ୍ତେ ଖାଲି ମଦନକୁ ହସରେ ଉଡ଼େଇ ଦିଅନ୍ତି । ଘରେ ଯେତେ ଅଘଟଣ ଘଟେ ସବୁଥିପାଇଁ ସମସ୍ତେ ଖାଲି ଦୋଷ ଦିଅନ୍ତି ତାକୁ । ବୋଷେଇ ଘରେ ତେଲ ଢାଳିଛି କିଏ, ନା ମଦନ ! ପଢ଼ାଘରେ ସ୍ୟାହି ଢାଳିଲା କିଏ, ନା ମଦନ ? କାନ୍ଥସାରା ଅଙ୍ଗାରରେ ଗାରେଇଛି କିଏ, ନା ମଦନ । ଯେତେକ ମାଡ଼ଖିଆ କାମ, ସବୁ କରିଛି ମଦନ ।

ଭାଇ ଭଉଣୀଙ୍କ କଥାରେ ମଦନ ବୋଉଠୁ ମାଡ଼ଖାଏ । ଜେଜୀଙ୍କଠୁ ଗାଳି ଶୁଣେ, ପୁଣି ବେଳେ ବେଳେ ଆଈଙ୍କଠଉଁ ବି ମାଡ଼ ଖାଏ । କେହି ଧମକାଧମକି କଲେ ତାକୁ ତ ଆଦୌ ଶୁଭେନ, ସମସ୍ତଙ୍କ କଥାରେ ସେ ମୁଣ୍ଡ ଟୁଙ୍ଗାରି ଦିଏ । ଏଣେ ବି କୌଣସି କଥାରେ ତାର ପ୍ରତିବାଦ ନ ଥାଏ । ସମସ୍ତେ ମନରେ ଧରି ନିଅନ୍ତି ସେ ନିଶ୍ଚିତ ଭାବେ ଦୋଷୀ । ତେଣୁ ବଡ଼ପାଟିଆମାନେ ଦୋଷ କରି ଖସିଯାଆନ୍ତି—ସେ କାଲି ବୋଲି ମାଡ଼ ଖାଏ !

ସେଥିରେ କଣ ଭାଇଭଉଣୀମାନେ ତାକୁ କମ୍ ଥଟ୍ଟା ପରିହାସ କରନ୍ତି । ତାକୁ କେନ୍ଦ୍ର କରି ଘରେ ସବୁବେଳେ ଭାଇ ଭଉଣୀଙ୍କ ଭିତରେ ଠଟ୍ଟାଠଟ୍ଟି ହସାହସି ଚାଲିଥାଏ । କିଏ ତାକୁ ଡାକେ 'ଜନମକାଣ୍ଡ' ତ, କିଏ ଡାକେ 'ଜଡ଼ଭରତ' ।

ମଦନକୁ ସେ ସବୁ ଯିନା ଶୁଭେନା, ହେଲେ ସେମାନଙ୍କର ଥଟ୍ଟା ପରିହାସକୁ ସେ ଠିକ୍ ଠଉରେଇ ନିଏ । ମାତ୍ର ତା'ର ସ୍ୱଭାବ ଭଲ ହୋଇ-ଥିବାରୁ ସେ କେଉଁ କଥାକୁ ଧରିକରି ନିଏନା । ସବୁରି ଶୁଭ ମନାସି ତା'ର ଦିନ ବିତିଯାଏ ।

ତା'ର ବାପା, ଯଦୁମଣିବାବୁ କଲିକତାରେ ଚାକିରି କରନ୍ତି । ସେଦିନ ଛୁଟିରେ ସେ ଘରକୁ ଆସିଥାନ୍ତି । ସେଉଁ ଦଶ ପନ୍ଦର ଦିନ ରହିଲେ, ଦେଖିଲେ ପିଲାଗୁଡ଼ାକ ସ୍କୁଲକୁ ଯିବା ସମୟ ବ୍ୟତୀତ ସବୁବେଳେ ଖାଲି ଖେଳ ବୁଲା···ମାଡ଼ପିଟ୍‌ରେ ଲାଗିଛନ୍ତି । ଜଣ ଜଣ କରି ସମସ୍ତଙ୍କୁ ସେ ପାଖକୁ ଡାକି କହିଲେ—"ହଇରେ, ବୁଲିଲେ କଣ ପେଟ ପୂରୁଛି ? ଆମରି ବାଡ଼ିରେ କେତେ ଜମି ପଡ଼ିଛି, ତୁମେମାନେ ସମସ୍ତେ ମିଶି ଗୋଟିଏ ବଗିଚା କଲେ ଭଲ ହୁଅନ୍ତାନି ? ମୁଁ ଆର ଥରକୁ ଆସିଲା ବେଳକୁ ତୁମେମାନେ ମନ ଦେଇ ବଗିଚାଟିଏ କରିଥିବ । ମୁଁ ତୁମପାଇଁ ଗୋଟିଏ ଭଲ ଜିନିଷ ଦେଖି ଆଣିବି ।"

ପିଲାମାନେ ସମସ୍ତେ ବାପାଙ୍କ କଥାରେ ହଁ ଭରିଦେଲେ । ମାତ୍ର ଯଦୁମଣିବାବୁ ଚାଲିଗଲା ପରେ ସେ କଥାକୁ କିଏ ଆଉ କାହିଁକି ମନେଇରଖନ୍ତା ?

ମଦନ ଭୁଲିବା ପିଲା ନୁହେଁ । କୋଦାଳଟିଏ ଆଣି ମାଟି ଭାଙ୍ଗି ବାଡ଼ ବୁଜି ସେ ବଗିଚାଟିଏ ତିଆରି କଲା । ଖାଲି ଫୁଲଗଛ, ଫଳଗଛ କାହିଁକି, ସେଥିରେ ସେ ନାନା ପନିପରିବା, ଶାଗ ଆଦି ଗଛ ମଧ୍ୟ ଲଗାଇଲା । ଭାଇ-ଭଉଣୀମାନେ ବଗିଚାରେ ପଶି ବେଳେ ବେଳେ ତାକୁ ହୁକୁମ ଦିଅନ୍ତି— "ହଇରେ, ଏସବୁ ଫୁଲଗଛ ମୂଳରେ ଆଉଜାଏ ସାର କାହିଁକି ଦିଆ ହୋଇନି ? ଏ ଶ୍ୱେତ ଗୋଲାପ ଗଛଟା ସେଠି ନ ପୋତି ଏଠି କାହିଁକି ପୋତିଛୁ ?"

ସେମିତି ଥଟ୍ଟା ମଧ୍ୟ କରନ୍ତି—"ହଇରେ ଜଡ଼ଭରତ, ଏ ଶାଗ ଗଛ ଭିତରେ ଏ ଘାସଗଛ ବି ଲଗାଇଛୁ ନା କଣ ? ବାପା ଆସିଲେ ସ୍ୱାଙ୍କୁ ଦେଖି ତୋତେ ଗୋଟାଏ ବଡ଼ ପୁରସ୍କାର ଦେବେ !" ତାପରେ ନିଜ ନିଜ ଭିତରେ କୁହାକୁହି ହୁଅନ୍ତି—ଆମେ କଣ ଭାବୁଥିଲେ ! କାଲିମାନଙ୍କୁ ତ ଭଲ ବଗିଚା ଆସେ ? ମୋହନକୁ କୋଉ ଶୁଭୁଛି ଯେ ସେ କଣ ଜବାବ୍ ଦେବ ? ସେ ଖାଲି ଟିକେ ହସିଦିଏ ।

ଘଚରମାସ ପରେ ଯଦୁମଣିବାବୁ ଘରକୁ ଆସିଲେ । ଆସିଲାବେଳେ ସହରୁ ସତ ସେ ଗୋଟାଏ ଚ୍ଛୋଟିଆ ସାଇକେଲ ଆଣିଥାନ୍ତି । ସାଇକେଲ୍‌କୁ ଦେଖି ଏକା ମୋହନକୁ ଛାଡ଼ିଦେଲେ ଆଉ ସବୁ ପିଲାଙ୍କର ଆନନ୍ଦ କ'ଣ ଦେଖିବ ?

ବାପା ଘରେ ଗୋଡ଼ ଦେବାଯାଏ ସମ୍ଭାଳେ କିଏ ? ତାଙ୍କ ହାତ ଧରି କିଏ ଘୋଷାଡ଼ିଲା—"ଆସନା ବାପା ! ବଗିଚା କେତେ ସୁନ୍ଦର ହୋଇଛି ଦେଖି ଆସିବ ।" ସତେ ଯେମିତି କଲିଭଲିଆ । ଆଉ କିଏ କହିଲା—"ବାପା, କେଡ଼େ ସୁନ୍ଦର କଳା ମଚ୍‌ମଚ୍ କଅଁଳ ଛନ୍‌ଛନ୍ ଶାଗ ବଢ଼ିଛି—ତୁମେ ଶାଗ ଖାଇବାକୁ ଭଲ ପାଅନା ?"

ଯଦୁମଣିବାବୁ କହିଲେ,—"ରୁହ, ମୁଁ ଟିକେ ବିଶ୍ରାମ ନିଏ, ଯିବି । ଏତେ ବ୍ୟସ୍ତ ହେଉଛ କାହିଁକି ?" ପିଲାମାନେ କାହିଁକି ବା ବସେଇ ଦେବେ ? ତାଙ୍କ ପଛରେ ସେମିତି ଲାଗିଥାନ୍ତି । ଶେଷକୁ ଯଦୁମଣିବାବୁ ବିରକ୍ତ ହୋଇ ବଗିଚା ଦେଖିବାକୁ ଗଲେ । ବଗିଚା ଦେଖି ଚୁପ୍‌ଚାପ୍ କାହାରିକୁ କିଛି ନ କହି ସେ ଘରକୁ ଫେରି ଆସିଲେ । ତାପରେ ରୁକ୍ଷ ଗଳାରେ ଗର୍ଜନ କରି କହିଲେ—"ମୁଁ କହିଥିଲି ଇମିତି ଗୋଟାଏ ବାଜେ ବଗିଚା କରିବାକୁ ? କିଏ କରିଛି ସେ ବଗିଚା ?"

ବାପାଙ୍କର ଧମକ ଶୁଣି ସମସ୍ତଙ୍କର ପିଳେହି ପାଣି । ଏଥର ସମସ୍ତଙ୍କୁ ଗୋଟାଏ ମଉକା ଜୁଟିଗଲା । ଯେତକ ମାଡ଼ଖିଆ କାମ ତ ସବୁ ମଦନ କରେ । "ଆମେ ତାକୁ ନାହିଁ କରୁଛୁ, ତୁ ଏମିତି ଗୋଟାଏ ବାଜେ ବଗିଚା କର ନା—ସେ କ'ଣ ଆମ କଥା ଶୁଣିଲା !"

ଯଦୁମଣିବାବୁ କହିଲେ—"କୁଆଡ଼େ ଗଲା ସେ ମଦନ, ତାକୁ ଧରିଆଣ ମୋ ପାଖକୁ !"

ସଙ୍ଗେ ସଙ୍ଗେ ବାନର ସେନା ଗୃହଆଡ଼କୁ ଖେଦିଯାଇ ମଦନକୁ ଠାବ କରି ଧରିଆଣିଲେ ବାପାଙ୍କ ପାଖକୁ !

ମଦନକୁ ଦେଖିବାମାତ୍ରେ ଯଦୁମଣିବାବୁ କୋଳକୁ ଟାଣିନେଇ ଖୁବ୍ ଗେଲ କଲେ । ତାପରେ ତାକୁ ଠାରରେ ବୁଝେଇଦେଲେ—"ତୁ ଯେଉଁ ବଗିଚାଟି କରିଛୁ—ଖୁବ୍ ଭଲ ହୋଇଛି । ଏଇ ନେଏ ତୋର ପୁରସ୍କାର ?" ଏହା କହି ସେ ଆଣିଥିବା ସାଇକେଲ୍‌ଟିକୁ ମଦନକୁ ଧରାଇଦେଲେ !



ସେ କଥା ଦେଖି ଆଉ ସବୁ ପିଲାଙ୍କର ମୁହଁ ଲାଜ ଆଉ ଅପମାନରେ ମଉଳିଗଲା ।

ସେଇଦିନୁ ମଦନ ପ୍ରତି ସେମାନେ କେବେହେଲେ ଆଉ ଖରାପ ବ୍ୟବହାର କଲେ ନାହିଁ ।

ମହାନଠି ଁ ଖୁଣ ଥିଲେ କଣ ହବ ମନଟି ତାର ଖୁବ୍ ଚାଣ । ସେଇ ଚାଣ ମନ ପାଇଁ ସେ କେବେହେଲେ ହାରିଯାଇନ । ଶେଷକୁ ବାପାଙ୍କଠାରୁ ପୁରସ୍କାର ପାଇଛି ।

ଆଖି, କାନ ନ ଥାଇ ତାଆର ପର ଅନେକ ପିଲା ବଡ଼ ବଡ଼ କାମ କରି ଯୁଗ ଯୁଗକୁ ଅମର ହୋଇ ରହିଛନ୍ତି । ତେଣୁ ଅନ୍ଧ, ଛୋଟା, କାଲମାନଙ୍କୁ କେତେବେଳେ ହେଲେ ହୀନ ମଣିବା ଉଚିତ ନୁହେଁ । କଥାରେ ଅଛି—

"ଖୁଣ ମନଟି ବଡ଼ ଚାଣ, ଖୁଣକୁ ନ ମଣିବ ଆନ ।"

# ମଣିଷ ପଣିଆ

ଅମରନାଥ ବେହେରା



ସଞ୍ଜ ହୋଇ ଆସୁଥାଏ । ସହରର ନାମଜାଦା ଡାକ୍ତର ସୁବ୍ରତବାବୁ ବନ୍ଧୁମାନଙ୍କ ସହିତ ବୁଲି ବାହାରିଥାନ୍ତି । ବନ୍ଧୁମାନେ ମଟରକାର୍‌ରେ ବସି ସାରିଥାନ୍ତି । କେବଳ ସେ ଏକା ଡାକ୍ତରଖାନା ବାରଣ୍ଡା ଉପରେ ଥାନ୍ତି । ଏତିକବେଳେ ଗରିବ ବୁଢ଼ାଟିଏ ତାର ରୋଗିଣା ପୁଅଟିକୁ ଧରି ଡାକ୍ତରଖାନା ବାରଣ୍ଡା ଉପରକୁ ଉଠିଲା ।

ଆଠ ଦିନ ହେଲା ତା ପୁଅର ଦେହ ଖରାପ । ଯେତେ ଔଷଧପତ୍ର ଦେଲେ ବି ତା ରୋଗ ଭଲ ହେଉନି । ବୁଢ଼ା ପୁଅଟିକୁ ବାରଣ୍ଡା ଉପରେ ଶୁଆଇ ଦେଇ ଡାକ୍ତରବାବୁଙ୍କୁ ଜୁହାର କଲା । ତାପରେ ଖୁବ୍ ବିକଳରେ କହିଲା—"ବାବୁ, ଏଇ ଗୋଟିକ ବୋଲି ମୋର ପୁଅ । କଣ ଯେ ରୋଗ ହୋଇଛି, ଦିନକୁ ଦିନ ତା ଅବସ୍ଥା ଖରାପ ହୋଇଯାଉଛି । ଯେତେ ଯାହା କଲେ ବି ରୋଗ ଭଲ ହେବା ତ ଦୂରର କଥା, ଓଲଟି ବଢ଼ିଯାଉଛି । ଆପଣଙ୍କ କଥା ଶୁଣି ଅନେକ ଦୂରରୁ ପିଲାଟିକୁ କାନ୍ଧରେ ପକାଇ ନେଇ ଆସିଛି । ଦୟାକରି ତାକୁ ଭଲ କରିଦିଅନ୍ତୁ ।" କହୁ କହୁ ବୁଢ଼ା ହୋଁ କିନା କାନ୍ଦି ପକାଇଲା ।

ବୁଢ଼ାର କାନ୍ଦ ଦେଖି ଡାକ୍ତରବାବୁ କହିଲେ—"ଶୁଣ ବୁଢ଼ା; ଆଜ କିଛି ହୋଇ ପାରିବନି, କାଲି ସକାଳେ ପୁଅକୁ ନେଇ ଆସ ।"

ଏତିକି କହି ସେ ବାରଣ୍ଡା ତଳକୁ ଓହ୍ଲାଇ ଯାଇ ଗାଡ଼ିରେ ବସିଲେ । ଗାଡ଼ି ଚାଲିଲା ଆଗକୁ । ବୁଢ଼ା ସେମିତି ଲୁହଭରା ଆଖିରେ ତାଙ୍କ ଯିବା ବାଟକୁ ଚାହିଁ ରହିଥାଏ ।

ସେତେବେଳକୁ ରାତି ହୋଇଯାଇଥାଏ । ବେଗିଣା ପିଲାଟାକୁ ନେଇ ସେ କୁଆଡ଼େ ବା ଯିବ ? ତେଣୁ ବାଧ ହୋଇ ସେଇ ଡାକ୍ତରଖାନା ବାରଣ୍ଡାରେ ଶୋଇ ପଡ଼ିଲା । ହେଲେ ସେଇ ଦିନ ରାତିରେ ତା ପୁଅଟି ସବୁ ଦିନକୁ ଆଖି ବୁଜିଦେଲା ।

କଥାରେ ଅଛି ବିପଦ ଏକୁଟିଆ ଆସେନି । ତାର ସାଙ୍ଗ ସାଥୀଙ୍କୁ ଧରି ଆସେ । ସତକୁ ସତ ପୁଅ ମରିବାର ଦିନ କେଇଟା ପରେ ଝଡ଼ି ବତାସରେ ବୁଢ଼ାର କୁଡ଼ିଆ ଖଣ୍ଡିକ ବି ଉଡ଼ିଗଲା । ତେଣୁ ବୁଢ଼ା ଏକା-ବେଳକେ ନିରାଶ୍ରୟ ହୋଇଗଲା । ପେଟ ପୋଷିବା ପାଇଁ ବାରଦୁଆର ବୁଲି ଭିକ ମାଗିବାରେ ଲାଗିଲା ।

ଦିନକର କଥା । ବେଳ ରାତି ରାତି ହେଉଥାଏ । ବୁଢ଼ା ଭିକ ମାଗିସାରି ତାର କୁଡ଼ିଆକୁ ଫେରୁଥାଏ । ଏତିକିବେଳେ ସେ ବାଟରେ ଲୋକଙ୍କଠୁଁ ଶୁଣିଲା ଯେ ଡାକ୍ତର ସୁବ୍ରତବାବୁଙ୍କ ପୁଅ ସାପଙ୍କ ମେଳରେ ରହି ଗବେଷଣା କରୁଥିବାବେଳେ ଗୋଟାଏ ସାପ ତାକୁ କାମୁଡ଼ି ଦେଇଛି । ଯେତେ ଔଷଧପତ୍ର ଦେଲେ ବି କିଛି କାମ ଦେଉନାହିଁ । ଏକଥା ଶୁଣିଲା ମାତ୍ରେ ବୁଢ଼ାଟି ସେଇଠୁ ଲେଉଟିଲା । ଡାକ୍ତରଙ୍କ ଘରେ ପହଞ୍ଚି ଦେଖିଲା; ସମସ୍ତେ ପୁଅର ବଞ୍ଚିବା ଆଶା ପ୍ରାୟ ଛାଡ଼ି ଦେଇଛନ୍ତି । ପୁଅ ଶେଯ ପାଖରେ ବସି ଡାକ୍ତରବାବୁ ଆଖିରୁ ଲୁହ ଗଡ଼ାଉଛନ୍ତି ।

ବୁଢ଼ାଟି ସାପ ବିଷ ଝାଡ଼ିବା ମନ୍ତ୍ର ଜାଣେ । ତେଣୁ ସେ ଆଉ ଟିକେ ବି ଡେରି ନ କରି ସାଙ୍ଗେ ସାଙ୍ଗେ ମନ୍ତ୍ର ପଢ଼ିବାରେ ଲାଗିଗଲା । କିଛି ସମୟ ଝଡ଼ାଫୁଙ୍କା କରିବା ପରେ ଡାକ୍ତରବାବୁଙ୍କ ପୁଅ ଧୀରେ ଧୀରେ ଆଖି ଖୋଲିଲା । ତାପରେ ଶେଯ ଉପରେ ଉଠିବସିଲା । ଏକଥା ଦେଖି

ଡାକ୍ତରବାବୁଙ୍କ ଖୁସି କହିଲେ ନ ସରେ । ସେ ବୁଢ଼ାକୁ କୁଣ୍ଢାଇ ପକାଇ କହିଲେ—"ମଉସା, ପୁଅ ବଞ୍ଚିବାର ସବୁ ଆଶା ଛାଡ଼ି ଦେଇଥିଲି ବେଳେ ତମେ ବଳେ ବଳେ ଆସି ମୋ ପୁଅକୁ ବଞ୍ଚାଇ ଦେଇଛ । ତମର ଏ ଋଣ ମୁଁ ଜୀବନରେ ବି ସୁଝି ପାରିବିନି । ତମେ କେମିତି ଏ ଖବର ପାଇଲ ?"



ବୁଢ଼ା କହିଲା—"ବାବୁ, ପ୍ରାୟ ପାଞ୍ଚବର୍ଷ ତଳେ ଏମିତି ଏକ ସଞ୍ଜବେଳେ ମୁଁ ମୋର ରୋଗିଣା ପୁଅଟିକୁ ଭଲ କରିବା ପାଇଁ ତମ ପାଖକୁ ନେଇ ଆସିଥିଲି । ତମେ ସେତେବେଳେ ବନ୍ଧୁମାନଙ୍କ ସାଙ୍ଗରେ ମଟରରେ ବୁଲିଯିବା ପାଇଁ ବାହାରିଥିଲ । ତେଣୁ ମୋ ପୁଅକୁ ଟିକେ ଦେଖିଲ ବି ନାହିଁ । ଡାକ୍ତରଖାନାରେ ସେଇ ଖୋଲା ବାରଣ୍ଡାରେ ପଡ଼ି ପଡ଼ି ପୁଅ ମୋର ସବୁଦିନ ପାଇଁ ଆଖି ବୁଜିଦେଲା । ସେଇଦିନଠୁଁ ମୁଁ ଜଗଶ୍ରୟ ହୋଇ କାର ଦୁଆରେ ଭିକ ମାଗି ବୁଲୁଛି । ଆଜି ସେମିତି ଫେରୁଥିବାବେଳେ ଆପଣଙ୍କ ପୁଅ କଥା ଶୁଣିଲି । ତେଣୁ ସିଧା ଏଠିକି ଚାଲିଆସିଲି । ତମେ ଡାକ୍ତର ହୋଇ ବି ସେଦିନ ନିଜ କର୍ତ୍ତବ୍ୟରେ ଅବହେଳା କଲ । ହେଲେ ମୁଁ ମୋ କର୍ତ୍ତବ୍ୟରେ ହେଳା କରିଥାନ୍ତି କେମିତି ?"

ଏତିକ କହି ବୁଢ଼ା ଚୁପ୍ ହୋଇଗଲା । ସେତେବେଳକୁ ଡାକ୍ତର-ବାବୁଙ୍କ ଆଖିରୁ ଧାର ଧାର ହୋଇ ଲୁହ ବହିଯାଉଥାଏ । ସେ ଆଖିରୁ ଲୁହ ପୋଛି କହିଲେ—"ମଉସା, ମୋତେ କ୍ଷମା ଦିଅ । ମୁଁ ଶପଥ କରି କହୁଛି, ଏଣିକ ରୋଗୀସେବା ମୋ ଜୀବନରେ ସବୁଠୁଁ ବଡ଼ କାମ ହେବ । ମୁଁ ଆଉ କେବେହେଲେ ମୋ କର୍ତ୍ତବ୍ୟରେ ହେଳା କରିବ ନାହିଁ ।"

# ଜନ୍ମଦିନ ଖର୍ଚ୍ଚ

### କୃତ୍ତିବାସ ନାୟକ



ବୁଲୁ ମାନସିଂହବାବୁଙ୍କର ଏକମାତ୍ର ଗେହ୍ଲା ପୁଅ । ସେ ଷଷ୍ଠ ଶ୍ରେଣୀରେ ପାଠ ପଢ଼େ । ମେଧାବୀ ଛାତ୍ର ହିସାବରେ ସେ ସମସ୍ତ ସାଙ୍ଗ-ସାଥୀଙ୍କର ଅତିପ୍ରିୟ । ଜୟନ୍ତବାବୁଙ୍କ ପୁଅ ଗଜେଶ ବୁଲୁ ପାଖରେ ବସେ । ଦୁହେଁ ଦୁହିଁଙ୍କୁ ଖୁବ୍ ଭଲ ପାଆନ୍ତି ।

ଥରେ ଗଜେଶ ତା ଜନ୍ମଦିନ ଉତ୍ସବରେ ଯୋଗଦେବା ପାଇଁ ବୁଲୁକୁ ନିମନ୍ତ୍ରଣ କଲା ।

ବୁଲୁ ବଜାରରୁ ସୁନ୍ଦର ସୁନ୍ଦର କେତେଖଣ୍ଡ ବହି କିଣି ଆଣି ଗଜେଶଙ୍କ ଘରକୁ ଗଲା । ଗଜେଶ ବୁଲୁ ବାଟକୁ ଚାହିଁ ରହିଥାଏ । ବହିଗୁଡ଼ିକ ଗଜେଶକୁ ଉପହାର ଦେଲା ।

ଜୟନ୍ତବାବୁ ସହରର ଜଣେ ନାମଜାଦା ଧନୀ ଲୋକ । ପୁଅର ଜନ୍ମଦିନ ସେ ବଡ଼ ଧୁମ୍‌ଧାମରେ ପାଳନ କରୁଥାନ୍ତି । ସହରଯାକର ଲୋକ

ତାଙ୍କ ଘର ଆଗରେ ଠୁଳ । ଖିଆପିଆ ମଉଜ-ମଜଲିସ, ଗୀତନାଚରେ ସହରଟା ଉଚ୍ଛୁଳି ପଡ଼ୁଛି । ଏସବୁ ଦେଖି ବୁଲୁ ବହୁତ ଆନନ୍ଦିତ ହେଲା । ମନେ ମନେ ଭାବିଲା—ଏଥର ବାପାଙ୍କୁ କହିବ ମୋ ଜନ୍ମଦିନଟା ଏଇମିତି ପାଳନ କରିବ ।

ଖିଆପିଆ ଶେଷ କରି ବୁଲୁ ନିଜ ଘରକୁ ଫେରିଲା । ରାତିରେ ବିଛଣାରେ ପଡ଼ି କେତେ କଥା ଚିନ୍ତା କଲା । ଜନ୍ମଦିନ ବିଷୟରେ ବାପାଙ୍କୁ କଣ କହିବ ? କେମିତି ଉତ୍ତର ଦେବ । ଧୀରି କଣ୍ଠରେ ଏକ ପ୍ରକାର ରିହର୍ସାଲ୍ କରି ପକାଇଲା ।

ତା ପର ଦିନ ସକାଳୁ ବୁଲୁ ବାପାଙ୍କ ପାଖକୁ ଯାଇ ଗେହ୍ଲେଇ ହୋଇ କହିଲା—ବାପା ! ରାଜେଶର ଜନ୍ମଦିନରେ ଭାରି ମଜା ହେଲା । କାହିଁ ମୋର ତ କେବେ ଜନ୍ମଦିନ ଉତ୍ସବ ପାଳନ କରା ହେଉନାହିଁ ? ଏଥର ରାଜେଶ ଜନ୍ମଦିନ ପରି ମୋର ଜନ୍ମଦିନ ପାଳନ କର । ସାଙ୍ଗ-ସାଥୀଙ୍କୁ ନିମନ୍ତ୍ରଣ କରି ଆଣିବା । ଭାରି ମଜା ହେବ ।

—ଆଚ୍ଛା ମୋର ଜନ୍ମଦିନ କେବେ ପଡ଼ୁଛି ?

ମାନସିଂହବାବୁ ପୁଅର କଥାକୁ ମନଦେଇ ଶୁଣୁଥିଲେ । ହଠାତ୍ ସେ ଶୋଇବା ଘର ଭିତରକୁ ପଶିଗଲେ । ଅଳ୍ପ ସମୟ ମଧ୍ୟରେ ହାତରେ ଖଣ୍ଡିଏ ପାସବୁକ୍ ଓ କାଗଜ ଖଣ୍ଡେ ଧରି ଫେରିଲେ । ବୁଲୁ ଭାବିଲା—ବାପା ବୋଧହୁଏ—ମୋ କଥା ବୁଝିଲେ ନାହିଁ ।

ତାପରେ ମାନସିଂହବାବୁ ବୁଲୁକୁ ଡାକି ପାଖରେ ବସାଇ କହିଲେ —"ବୁଲୁ, ମୁଁ ଆଜି ତୋତେ ଗୋଟିଏ ସତ୍ୟ ଘଟଣା ଉପରେ ଗପ କହିବି, ମନଦେଇ ଶୁଣିବୁ । ତାପରେ ମୁଁ ସେ ଗପରୁ ପ୍ରଶ୍ନଟିଏ ପଚାରିବି । ଠିକ୍ ଉତ୍ତର ଦେଲେ, ତୋର ଜନ୍ମଦିନ ଉତ୍ସବ ପାଳନ କରିବି ।"

ବାପା ଗପ ଆରମ୍ଭ କଲେ—ଜଣେ ଜମିଦାର ତାଙ୍କ ଜ୍ୟେଷ୍ଠ ପୁଅର ଜନ୍ମଦିନ ଖୁବ୍ ଜାକ୍‌ଜମକରେ ପାଳନ କରୁଥିଲେ । ପୁଅଟି ବଡ଼ ହୋଇ-ଯିବାରୁ ଦୂରରେ ଯାଇ ପାଠ ପଢ଼ିଲା । ଯୋଗକୁ ପୁଅଟିର ଜନ୍ମଦିନ ଠିକ୍ ପରୀକ୍ଷା ପୂର୍ବରୁ ପଡ଼ିଲା । ତେଣୁ ସେ ଜନ୍ମଦିନରେ ଘରକୁ ଯାଇପାରିଲା ନାହିଁ । ଜମିଦାର ତିନିଶହ ଟଙ୍କା ପୁଅ ପାଖକୁ ପଠାଇ ଚିଠିରେ ଲେଖି-

ଦେଲେ—"ତୁ ଏଇ ଟଙ୍କାରେ ଜନ୍ମଦିନ ପାଳନ କରିବୁ । ଯଦି ଆଉ ଟଙ୍କା ଦରକାର ପଡ଼େ, ଶଠିରେ ଲେଖିବୁ ।"

ଜମିଦାର ପୁଅଟି ଟଙ୍କା ପାଇ କଣ ଭାବିଲା କେଜାଣି—ସିଧା ଗଲେଇ ପ୍ରଧାନ ଶିକ୍ଷକଙ୍କ ପାଖକୁ । ସମସ୍ତ କଥା ବୁଝାଇ ଦେଇ ସେ କହିଲା— "ଏଇ ଟଙ୍କାକୁ ମୁଁ ପୁଅର୍ ବଏକ୍ ଫଣ୍ଡକୁ 'ଗରିବ ଛାତ୍ର'ମାନଙ୍କ ପାଇଁ ଦେବାକୁ ଚାହେଁ । ଯେଉଁ ପିଲା ଦରମା ଦେଇପାରୁ ନାହାନ୍ତି, ତାଙ୍କର ନାମ କଟିଯାଉଛି, ଏଇ ପଇସାରେ ତାଙ୍କୁ ସାହାଯ୍ୟ କରିବାକୁ ମୋର ଅନୁରୋଧ ।" ଜମିଦାର ପୁଅର କଥା ଶୁଣି ଶିକ୍ଷକ ଛାତ୍ର ସମସ୍ତେ ଧନ୍ୟ ଧନ୍ୟ କଲେ । ସେଇ ଟଙ୍କାରେ ୧୦ଜଣ ଛାତ୍ର ପାଠ ପଢ଼ିବାର ସୁଯୋଗ ପାଇଲେ । ପ୍ରତିବର୍ଷ ଜମିଦାର ପୁଅ ଜନ୍ମଦିନ ଖର୍ଚ୍ଚକୁ ବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କ ନାମରେ ଜମା କରିଦିଏ ।

ଯେଉଁ ୧୦ ଜଣ ପିଲା ସେ ଟଙ୍କାରେ ପାଠ ପଢୁଥିଲେ, ସେମାନଙ୍କ ମଧ୍ୟରୁ କେତେଜଣ ବଡ଼ ମଣିଷ ହୋଇ ସାରିଲେଣି । ସେମାନେ ଜମିଦାର ପୁଅକୁ ସବୁଦିନ ମନେ ରଖିଛନ୍ତି ।

କହିଲୁ ବୁଲୁ, "ଜମିଦାର ପୁଅ ଜନ୍ମଦିନ ଖର୍ଚ୍ଚକୁ ଧୁମ୍‌ଧାମରେ ପାଳନ କରିଥିଲେ ଭଲ ହୋଇଥାନ୍ତା, ନା ପିଲାଙ୍କ ପାଠପଢ଼ାରେ ଖର୍ଚ୍ଚ କରି ଭଲ କରିଛି ?"

ବୁଲୁ ଉତ୍ତର ଦେବାକୁ ପ୍ରସ୍ତୁତ ନ ଥିଲା । ସେ ଲାଜେଇ ପଡ଼ି କହିପକାଇଲା—"ପାଠ ପଢ଼ାଇ ଭଲ କଲା ।"

ଏତିକବେଳେ ବୁଲୁର ବାପା ହାତରେ ଧରିଥିବା ପାସ୍ ବୁକ ଓ କାଗଜଖଣ୍ଡିକ ବୁଲୁ ହାତକୁ ବଢ଼ାଇ ଦେଇ ଦେଖିବାକୁ କହିଲେ । ବୁଲୁ ପାସ୍‌ବୁକ୍‌ଟିକୁ ଖୋଲାଇ ଦେଖିଲା—ଦଶବର୍ଷ ହେଲା ପ୍ରତ୍ୟେକ ମାର୍ଚ୍ଚ ମାସ ଦୁଇ ତାରିଖରେ ୩୦୦ଟଙ୍କା ଲେଖାଏଁ ଜମା କରାଯାଇଛି । ସ୍ଥାନୀୟ ବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କ ନାମରେ ଏହି ପାସ୍‌ବୁକ୍‌ଟି ଅଛି । ଯେଉଁ ୧୦ଜଣ ପିଲା ସେହି ଟଙ୍କା ସାହାଯ୍ୟରେ ପାଠ ପଢ଼ିପାରୁଛନ୍ତି, ତାଙ୍କର ନାମଗୁଡ଼ିକ ସେ କାଗଜଟିରେ ଲେଖାଅଛି । ଏସବୁ ଭଲଭାବେ ଦେଖି ବୁଲୁ କିଛି ବୁଝିପାରିଲା ନାହିଁ । ବାପାଙ୍କ ମୁହଁକୁ ବଲବଲ କରି ଚାହିଁରହିଲା ।

ମାନସିଂହବାବୁ ପୁଅର ମନକଥା ବୁଝିପାରି କହିଲେ—"ମୁଁ ଯେଉଁ ଗପଟି କହିଲି—ଗପରେ ଥିବା ଦଶଜଣ ଗରିବ ପିଲାଙ୍କ ମଧ୍ୟରେ ମୁଁ ଜଣେ ଥିଲି । ଜମିଦାରପୁଅଦ୍ୱାରା ଉପକୃତ ହୋଇ ମୁଁ ଆଜି ଜଣେ ମଣିଷ ହୋଇପାରିଛି । ସେଇ କଥାକୁ ମନେରଖି ତୋର ଜନ୍ମଦିନ ପ୍ରତିବର୍ଷ ମାର୍ଚ୍ଚ ମାସରେ ୩୦୦ ଟଙ୍କା ଜନ୍ମଦିନ ଖର୍ଚ୍ଚକୁ ମୁଁ ଜମା କରେ । ଏହି ଟଙ୍କାରେ ୧୦ ଜଣ ଗରିବ ଅସହାୟ ଛାତ୍ର ପାଠପଢ଼ନ୍ତି ।



କହିଲୁ ବୁଲୁ ତୋ ଜନ୍ମଦିନ ଠିକ୍ ଭାବେ ପାଳନ ହେଉଛି କି ନାହିଁ ?"

ବୁଲୁ ବାପାଙ୍କ କଥା ଶୁଣି ସବୁ କଥା ବୁଝିପାରିଲା । ସେ ଆଉ କଥା କହିପାରିଲା ନାହିଁ । ତାର କଣ୍ଠ ରୁଦ୍ଧ ହୋଇଆସିଲା । ଦୁଇ ଆଖିରେ ଲୁହ ଜକେଇ ଆସିଲା । ବାପା ବୋଲି ଡାକି ସେ ବାପାଙ୍କ ଛାତିରେ ମୁହଁ ଗୁଞ୍ଜିଦେଲା । ବାପା ବୁଲୁ ମୁଣ୍ଡରେ ହାତ ବୁଲେଇ ଆଣିଲେ ।




ଜେଜେ ଯେଉଁଦିନ ଘରକୁ ଆସିଲା, ଘରଟା କାହିଁକି, ସାରା ପଡ଼ାଟାରେ ଚହଳ ପଡ଼ିଗଲା । ସମସ୍ତେ କାମ ଧନ୍ଦା ଛାଡ଼ି ତାକୁ ନିରେଖିବାକୁ ଲାଗିଲେ । ଜେଜେ କେତେବେଳେ ଆଖି ବୁଜି ଢୁଲାଉଥାଏ ତ' କେତେ-ବେଳେ ମିଚିମିଚି କରି ଅନାଉଥାଏ । ପୁଣି କେତେବେଳେ ସାରା ଦେହ କୁଣ୍ଡାଉଥାଏ ।

ତା'ର ନାଆଁ ଯେ ପ୍ରଥମରୁ 'ଜେଜେ' ଥିଲା ଏକଥା ନୁହେଁ । ଯେଉଁଦିନ ବାଙ୍କନିଧିବାବୁ ତୋଟାମାଳରୁ ଏକୁଟିଆ ଦେଖି ତାକୁ ନେଇ ଆସିଲେ, ସେଦିନ ଥିଲା ବାଙ୍କବାବୁଙ୍କ ପିତୃଦେବ ରଙ୍କନିଧିଙ୍କ ଶ୍ରାଦ୍ଧଦିବସ । ଏଣୁ ବଡ଼ ଝିଅ ଶଙ୍କି ଓ ମଝିଆଁ ପୁଅ ବଙ୍କୁଲିର ଅନୁରୋଧରେ ତା ନାଆଁ ରଖାଗଲା 'ଜେଜେ' ।

ବଙ୍କୁ, ପଙ୍କୁଙ୍କ ବୋଉ ବି ରାଜି ହୋଇ କହିଲେ, "ପଶୁଜନ୍ତୁ ଖାଇବ, ପିଇବ, କୁଦିବ, ଡେଇଁବ, କ୍ଷତି କଣ ?"

ହେଲେ 'ଜେଜେ' ନାଆଁ ଶୁଣି ଚଗିଡ଼ିଲେ ଜେଜେମା । "କଳା ମୁହାଁକୁ କାଳେ କାଳେ ବିଶ୍ୱାସ ନାହିଁ । ସୀତା ଦେବୀଙ୍କ ଅଭିଶାପ ଅଛି । ଲଙ୍କାପୋଡ଼ା ବାନ୍ଦର ଏମାନେ । ଯୋଉ ପୁରକୁ ଯିବେ, ସେ ପୁରେ ତେଇଁକୁଦ ନବନସ୍ତନ କରିବେ । ଏମାନଙ୍କୁ ମୋଟେ ଓପ୍ରୋଧ ନାହିଁ ।"

ଗୃହଁ ଗୃହଁ ଦିନ କଟିଗଲା । ଜେଜେ ଏଥିଭିତରେ ଘରଟି ମଧ୍ୟରେ ମଣିଷଟିଏ ଭଳି ମିଶିଗଲା । ଚା' ଖାଅ, ଜଳଖିଆ ଖାଅ, ସବୁଥିରେ ଜେଜେ ପାଇଁ ଭାଗ ରଖି ଯାହା କରୁଛ କର । ଯୋଉଠି ଥାଉ, ଯାହା କରୁଥାଉନା କାହିଁକି, ଡାକଟାଏ ମାରିଦେଲେ ଡିଆଁ ମାରି ଆସି ହାଜର । କାଉ କି ବିଲେଇ ତା ଉପରେ ପିଣ୍ଡା ମାଡ଼ନ୍ତିନ, ପିଲାଗୁଡ଼ାକ ବି ଇଜରବଜର ହୋଇ ଲଗେଇଥାନ୍ତି ତା ସାଥିରେ ଦିନରାତି ।

ବାଙ୍କବାବୁଙ୍କ ମନ ଖୁସି । ଯାହା ହେଉ ଧଣ୍ଡିଶଙ୍କରଙ୍କ ପରି ଶଙ୍କି, ପଙ୍କୁ, ବାଙ୍କ ତ ଆଉ ଆଜିକାଲି ରାସ୍ତାରେ ଚକ ଗଡ଼ାଉନାହାନ୍ତି କି ଗୁଡ଼ି ଉଡ଼ାଉନାହାନ୍ତି । ବଡ଼ଝିଅ ଶଙ୍କି ଯାହା ଯାହା, ସାନ ପୁଅ ବଙ୍କୁ ଓ ପଙ୍କୁ ତାକୁ ମୋଟେ ବସେଇ ଉଠେଇ ଦିଅନ୍ତିନ ।

ସଦା ସର୍ବଦା ସେଇ ଗୋଟାଏ କଥା ଆଲୋଚନା, "ଜେଜେକୁ ଗୁହାଁରେ, ଏ କମିତିକା ପିଜୁଳି ଗଛରେ ଡାଳମାଙ୍କୁଡ଼ି ଖେଳୁଛି" । "ଦେଖ, ଦେଖନା ଭାଡ଼ରେ ଜେଜେ କେମିତି ଲଟକିଛି, ଆର ଜନ୍ମରେ ଆମ ଜେଜେ ମଣିଷଛୁଆଟିଏ ଥିଲା ।"

ହେଲେ ଜେଜେମାଙ୍କର ତାର ଅହିନକୁଳ ସମ୍ପର୍କ । ବୁଢ଼ୀ ଗାଧୋଇସାରି ସୂର୍ଯ୍ୟ ପୂଜା କଲାବେଳେ ପୂଜା ପାଚିଲା କଦଳୀ ନେଇ ଜେଜେ ମାରିବ ଡିଆଁ, ଜପା ମାଳକ ନେଇ ପଳେଇବ । ଜେଜେମା' ବି ତଦ୍ରୂପ । "ରହରେ ପୋଡ଼ାମୁହାଁ, ନିଆଁ ଲଗା, ଗାତପଶା" କହି ଧାଇଁଥିବେ ଝୁଅଁଣି କି ପାଞ୍ଚଣ ଖଣ୍ଡେ ଧରି । ଜେଜେ ମାରେ ଡିଆଁ ପିଢ଼ା ଉପରକୁ, ନଇଲେ ପଶେ ଯାଇ ଭାଡ଼ିଭିତରେ ।

ଦିନକର କଥା । କାର୍ତ୍ତିକ ମାସ । ହବିଷ ପଣ ପକାଇ କଣ ଟିକିଏ କାମ ବାହାନାରେ ବୁଢ଼ୀ ଯେମିତି ଘରକୁ ଆସିଛି, ଜେଜେ କୁଆଡ଼େ ଥିଲା ହବିଷ ପଣ ଉଠାଇ ନେଇ ଚଲ୍ । ଦେଖ ବୁଢ଼ୀକୁ । ଅଳପେଇଷାକୁ ଧର୍ମ

ଗ୍ରୁଡ଼ିଗଲା । ମୋର ବାର ବରଷର ତପସ୍ୟା ଶୁଖୁଆ ପୋଡ଼ାରେ ଗଲା । ସଞ୍ଜବେଳକୁ ଜେଜେ ଯେମିତି ଘରକୁ ଆସିଛି, ବୁଢ଼ୀ ଗ୍ରଞ୍ଚୁଣୀ ମୁଠାରେ କୋରିଲା ଆଚ୍ଛା କରି ।

ମାଡ଼ଖାଇ ଜେଜେ ମୁହଁ ମାଡ଼ି ରୁଷିଲା ଓଳିଆ ସନ୍ଧରେ । ବୋଉ ଯେତେ ବୁଝେଇଲେ ବି ନ ବୁଝେ । ମନରେ ଅଟଳ ପ୍ରତିଜ୍ଞା । ଶଙ୍କି ଆଉ ବାଙ୍କୁ ବି ଥକିଗଲେ । ସାନପୁଅ ପଙ୍କୁର ଜେଜେ ସହିତ ଭଲ ପଟେ । ଦୁଇଟା ପାଚିଲା କଦଳୀ ନେଇ ତାକୁ ସାକୁଲେଇ କହିଲା, "ତୋତେ ମାଡ଼ଟା ଖୁବ୍ କାଟିଛି । ନାଁରେ ? ରହିଥା ସମସ୍ତେ ମିଳି ବୁଢ଼ୀକୁ ପାନଟାଏ ଦେବା ।"

ଜେଜେ କଣ ବୁଝିଲା କେଜାଣି କଦଳୀ ଦୁଇଟାକୁ ପାଟିରେ ପୂରେଇ ଦେଇ କଚରି ମିଚରି କରି କଣ ଗୁଡ଼ାଏ କହି ନିଜର ସମ୍ମତି ଜଣାଇଲା । ବଙ୍କୁ ପଙ୍କୁ ଯୋଜନା ତିଆରି କରିବାରେ ଲାଗିପଡ଼ିଲେ ।

ସେଦିନ ରାତିରେ ଜେଜେକୁ ବୁଝେଇ ଖୋଇବାକୁ ବାଙ୍କବାବୁଙ୍କୁ ନାକେଦମ୍ । ଦିନ ଦୁଇଟା ପରେ ପଡ଼ିଶା ଘର ବୋହୂ ବାପ ଘରୁ ଆସିଲା । ପଙ୍କୁ, ବଙ୍କୁ ସାଙ୍ଗ ହୋଇ ଆସି କହିଲେ, "ଜେଜେମା ! ପଡ଼ିଶା ଘର ଶଙ୍କର୍ଷଣ ବାବୁଙ୍କ ସାନବୋହୂ କଙ୍କି ଆମ ଘରକୁ ଆସିଛି । ତାକୁ ଦେଖିବ ଆସ ।"

ବୁଢ଼ୀ ଦାଣ୍ଡ ଘରକୁ ତରବରରେ ଆଗେଇଲା । ଝରକା ପାଖ ଖଟ ଉପରେ ହାତେ ଲମ୍ବର ଓଢ଼ଣା ଟାଣି ବୋହୂ ବସିଛି । ବୁଢ଼ୀ କହିଲା, "ହଇଲୋ ମାଆ, ତୋ ଭଳି ଶିକ୍ଷିତା ଝିଅ ମୁହଁରେ ଲାଜ ପୁଣି ଗୋଟାଏ କଣ ବା ? ଆସିଲୁ, ଏଣିକି ଆସିଲୁ । ତୋତେ ଟିକିଏ ଭଲ କରି ଦେଖେ ।"

ସଞ୍ଜ ହୋଇ ଆସିଥିଲା । ଅନ୍ଧାରରେ ବୁଢ଼ୀକୁ ଦିଶୁନି । ତେଣୁ ବୁଢ଼ୀ ଟିକିଏ ପାଖକୁ ପାଖକୁ ଆଗେଇଲା । ହେଲେ ବୋହୂ ପୂର୍ବଭଳି ଚୁପ୍‌ଚାପ୍ । ବୁଢ଼ୀ ମନରେ ସନ୍ଦେହ ହେଲା । ବୋହୂର ମୁଣ୍ଡରୁ ଓଢ଼ଣାଟା ଯେମିତି କାଢ଼ି ଦେଇଛି, ଲୁଗା ଫୋପାଡ଼ି ଅସଲ ବୋହୂ ଜେଜେ ବୁଢ଼ୀ ଉପରକୁ ମାରିଲା କୁଦା । ଦେଲା ରାମ୍ପୁଡ଼ି, କାମୁଡ଼ି । ବୁଢ଼ୀ ବିକଳ ପାଟିକରି ଚିଲେଇ ଉଠିଲା ।

ପିଲଗୁଡ଼ାକ ସିନା ମଜା ଦେଖିବା ପାଇଁ ଏମିତି ଗୋଟାଏ ଢ଼ଙ୍ଗ କରିଥିଲେ । ହେଲେ ଘଟଣାଟା ଏମିତି ଆକାର ଧାରଣ କରିବ ସେକଥା ଚିନ୍ତା କରି ନ ଥିଲେ । ପାଖ ପଡ଼ଶା ଘରୁ ସୁଖେଶ୍ୱର ଡାକ୍ତରବାବୁଙ୍କୁ ଡାକିବାକୁ ତରବରିଆ ସମ୍ବଲନ । ଡାକ୍ତର ପଟି ବାନ୍ଧି ଔଷଧ ଦେବାରୁ ରକ୍ଷା ମିଳିଲା ।

ସେଦିନ ବାଙ୍କବାବୁ ଘରକୁ ଫେରି ଆଗ ବଡ଼େ ନକରଥାନାଆ କରି ଛେଚିଲେ ପିଲଗୁଡ଼ାଙ୍କୁ । ଛେଚିବା କଥା । ପଶୁଜନ୍ତୁ ସାଙ୍ଗରେ ଥିଲା ଗୋଟାଏ କ'ଣ ? ତା'ର ବା ଦୋଷ କ'ଣ ? ଯାହା ଶିଖେଇବ, ଶିଖିବ ।

ଏଣିକି ଜେଜେ ଉପରେ ଶବ୍ଦେ ଚଢ଼ିବାଳିଣି ଧାବ ଲାଗୁ ହୋଇଗଲା । ଆରଦିନ ସକାଳୁ ତା ବେକରେ ଝୁଲିଲା ଶକ୍ତ ଲୁହାର ଚେନ୍ ।

# ଅନୁକରଣ




ମୋ ସାନପୁଅ ଟିଂଟୁ ଭାରି ଅନୁକରଣପ୍ରିୟ । ତାର ପ୍ରତ୍ୟେକ କାର୍ଯ୍ୟରେ ସେ ବଡ଼ ବଡ଼ ଲୋକଙ୍କୁ ଅନୁକରଣ କରିବାକୁ ଚେଷ୍ଟା କରିଥାଏ । ଅବଶ୍ୟ ସେମାନଙ୍କ ଭଲଗୁଣ ନୁହେଁ, ତାଙ୍କ ଦୋଷ ଦୁର୍ବଳତାକୁ...... ।

ଦିନକର କଥା । ସକାଳୁ ଉଠି ମୁଁ ଦେଖିଲି ଯେ ସେ ବିଛଣାରେ ବସି ବିଡ଼ି ଟାଣୁଛି । ମୋର ଭାରି ରାଗ ହେଲା । ତା କାନଟାକୁ ଧରି କଷିକରି ମୋଡ଼ିଦେଲି । ତାକୁ ଭାରି କାଟିଲା । କାନ ଆଉଁସୁ ଆଉଁସୁ କହିଲା—"ଅଯଥାରେ ମୋତେ ମାରିଲ କାହିଁକି ? ଇଂଲଣ୍ଡର ପୂର୍ବତନ ପ୍ରଧାନ ମନ୍ତ୍ରୀ ଚର୍ଚ୍ଚିଲ୍ ପବ ଚୁରୁଟ୍ ଟାଣୁଥିଲେ ।

ତା ହୁକ୍କା ଟାଣିବାର କାରଣ ଜାଣିଗଲି । ମନେ ମନେ ବହେ ହସି ଚୁପ୍ ରହିଲି ।

ଆଜ ଦିନକର କଥା । ମୁଁ ଅଫିସ୍‌ରୁ ଫେରି ଗପ ପିଉଛି । ଟିଂଟୁ ଆସି ପହଞ୍ଚିଗଲା । କହିଲା—"ବାପା, ମୁଁ ତୁମ ନୂଆ କଲମର ମୁନଟା ଭାଙ୍ଗିଦେଇଛି ।"

ଦାମିକା କଲମଟା । ମୁନଟା ବଦଳାଇବାକୁ ଯାହା ତ ଖର୍ଚ୍ଚ ପଡ଼ିବ, ତାଛଡ଼ା ସେଥିପାଇଁ ମୋତେ ପୁଣି ବଜାର ପର୍ଯ୍ୟନ୍ତ ଯିବାକୁ ହେବ । ସେ ଗତିରେ ବହୁତ ଲେଖାଲେଖି କରିବାକୁ ଥାଏ । ତେଣୁ ବିରକ୍ତ ହୋଇ ପଚାରିଲି—"କରେ, ତୋର ତ କଲମ ଅଛି । ମୋ କଲମରେ ଲାଗୁଥିଲୁ କାହିଁକି ?" ଟିଂଟୁ ହସି ହସି ଉତ୍ତର ଦେଲା—"ଗୁରୁ ନେହେରୁ ପରି ବାପାଙ୍କ କଲମକୁ ଏମିତି ଭାଙ୍ଗିଦେଇ ତାଙ୍କ ଆଗରେ ଦୋଷ ମାନି ଯାଇଥିଲେ । ତାଙ୍କର କଣ ନିଜ କଲମ ନ ଥିଲା ?"

ଏବେ ବୁଝିଗଲି ଟିଣ୍ଟୁ କାହିଁକି ମୋ କଲମରେ ଲାଗିଥିଲା । ମୁନଟା ନିଶ୍ଚୟ ସେ ଜାଣି ଜାଣି ଭାଙ୍ଗିଛି । ଦୋଷ କଲେ ଯିନା ସ୍ୱୀକାର କରି ଗୁରୁ ନେହେରୁଙ୍କ ଭଳି ହେବ ? ଏଥର କିନ୍ତୁ ମୁଁ ମନେ ମନେ ତାକୁ ଶିକ୍ଷାଟିଏ ଦେବାପାଇଁ ସ୍ଥିର କରିନେଲି ।

ଦୁଇଚାରି ଦିନ ପରର କଥା । ସେଦିନ ହୋଇଥାଏ ରବିବାର । ସଂଧ୍ୟାକୁ ମୁଁ ବଗିଚା ଆଡ଼କୁ ବୁଲିଗଲି । ସେଠାରେ ଯାହା ଦେଖିଲି ରାଗରେ ମୋ ଦେହ ଜଳିବାକୁ ଲାଗିଲା । କେତେକ ଭଲ ଭଲ ଫୁଲଫଳ ଗଛ କଟାହୋଇ ଭୂଇଁରେ ଲୋଟୁଥାଏ । କିଏ ଏପରି କଲା ଜାଣିବାକୁ ପାଟିକରି ଚାକରକୁ ଡାକିଲି । କିନ୍ତୁ ଚାକର ବଦଳରେ ଆସି ପହଞ୍ଚିଗଲା ଟିଣ୍ଟୁ । ହାତରେ ତାର ଚକ୍ ଚକ୍ ଦାଢ଼ୁଆ କଟୁରିଟାଏ । ମୁଁ ତାକୁ କିଛି ପଚାରିବା ଆଗରୁ ସେ କହିପକାଇଲା—"ବାପା, କ୍ଷମା କରିବେ । କଟୁରିର ଦାଢ଼ ପରୀକ୍ଷା କରିବାକୁ ଯାଇ ମୁଁ ଏସବୁ ଗଛ କାଟି ପକାଇଛି । ଜର୍ଜ ୱାଶିଂଟନ୍ ପରି ଥରେ ସେହିପରି କରିଥିଲେ··· ।"

ସେତେବେଳକୁ ମୋ ରାଗ ପଞ୍ଚମରେ ପହଞ୍ଚିଯାଇଥାଏ । ତା କାନଟା ଧରି ଭଡ଼ ଭଡ଼କା ଘର ଭିତରକୁ ନେଇ ଆସିଲି । ଦେଖିଲି ଆମ ଚାକରାଣୀ ଘରେ ଝାଡ଼ୁ ଲଗାଇବାକୁ ଯାଉଛି । ମୁଁ ତା ହାତରୁ ଝାଡ଼ୁଟାକୁ ଟାଣିନେଇ ଟିଣ୍ଟୁ ହାତରେ ଦେଇ ଘରସାରା ଝାଡ଼ୁ ଦେବାପାଇଁ କହିଲି । ସେ କୁନ୍ଥୁ କୁନ୍ଥୁ

ହୋଇ ପ୍ରତିବାଦ କଲା—"ଚାକରାଣୀ ତ ଅଛି, ମୁଁ କାହିଁକି କରିବି··· ?" ମୁଁ ସଙ୍ଗେ ସଙ୍ଗେ ଉତ୍ତର ଦେଲି—"ଜାଣିଛୁ କି ଗାନ୍ଧିଜୀ କଣ କହୁଥିଲେ ଓ କରୁଥିଲେ ? ସେ ସବୁ କହୁଥିଲେ ସର୍ବଦା ପରିଷ୍କାର ରୁହ ଏବଂ ନିଜ କାମ ନିଜେ କର । ତାହା ସେ କରୁଥିଲେ ମଧ୍ୟ··· ।" ବିଚରା ଶଣ୍ଟୁ ଆଉ କରେ କଣ ? ବାଧ୍ୟ ହୋଇ ଘରସାରା ଝାଡ଼ୁ ଲଗାଇଲା ।



ଏହାପରଠାରୁ ତାର ବଡ଼ ବଡ଼ ଲୋକଙ୍କୁ ଏପରି ଅନୁକରଣ କରିବାର ନିଶା ଛୁଡ଼ିଗଲା ।



ଗାଁଟିର ନାମ ଆନନ୍ଦପୁର । ପାଖଆଖ ଗାଁମାନଙ୍କ ମଧ୍ୟରେ ସବୁ କଥାରେ ଆଗୁଆ । ସେହି ଗାଁର ଯୋଗ୍ୟ ସନ୍ତାନମାନଙ୍କ ଧନ, ମନ, ଶ୍ରମ ଓ ଆପ୍ରାଣ ଚେଷ୍ଟା ଫଳରେ ଗାଁ ଶେଷମୁଣ୍ଡରେ ମୁଣ୍ଡ ଟେକିଛି ବିଦ୍ୟାମନ୍ଦିରଟି ବହୁକାଳରୁ । ଆଗୁଆ ଗାଁ ହୋଇଥିବାରୁ ଆଛା ବଜାରଟିଏ । ବଜାର ମଧ୍ୟରେ ଗ୍ରାମ୍ୟ ବ୍ୟାଙ୍କ, ପୋଷ୍ଟ ଅଫିସ, ପଞ୍ଚାୟତ ଅଫିସ, ତହସିଲ ଅଫିସ, ସମବାୟ ଭଣ୍ଡାର ପ୍ରଭୃତି ସ୍ଥାନ ପାଇଛି ।

ଗାଁଟିର ଅନ୍ୟମାନଙ୍କ ଭଳି ଦୀନବନ୍ଧୁ ନିଜ ଛୋଟିଆ ସଂସାରଟିକୁ ନେଇ ଦୁଃଖେ ସୁଖେ କାଳ କାଟୁଥିଲେ । ହଠାତ୍ ତାଙ୍କୁ ଅନ୍ତ୍ରଜ୍ୱର ଧରିଲା । ଜୀବନର ଶେଷ ଅବସ୍ଥା ଜାଣି ସ୍ତ୍ରୀ ରୂପବତୀଙ୍କୁ ଡାକି ଶେଷ ଉପଦେଶ ଦେଲେ । ଆଠବର୍ଷର ବାଳୁତ ପୁଅ ସତ୍ୟବ୍ରତକୁ ଛାତିରେ ଚାପିଧରି ଅବଶ କଣ୍ଠରେ କହିଲେ—

"ବାବା, ମୁଁ ଆଉ ବେଶି ଦିନର ନୁହେଁ । ମୋ ପରେ ଏ ଛୋଟିଆ ସଂସାର ତୋତେ ଚଳେଇବ । ତୋର ଛୋଟ ଭାଇ ଭଉଣୀଙ୍କୁ ପାଳିପୋଷି ମଣିଷ କରିବୁ । ସମସ୍ତଙ୍କ ମନନେଇ ଚଳିବୁ । କାହାରି ମନରେ ଦୁଃଖ ଦେବୁନି, ନ ହେଲେ ସେମାନେ ମୋତେ ମନେପକାଇ ଦୁଃଖ କରିବେ । ତୁ କଥା ଦେ ପୁଅ, ମୋ କଥା ରଖିବୁ ତ...... ?"

ବାପାଙ୍କର ହାଡ଼ୁଆ ଦୁର୍ବଳ ଛାତିଉପରେ କାନ ଡେରି ସବୁ ଶୁଣିଲା ସତ୍ୟବ୍ରତ । ଆଖିରେ ତାର ଜକେଇ ଆସିଲା ଗରମ ଲୁହ । ଟିକି ମୁଣ୍ଡ ତାର କଥାକେଇଟାକୁ ଧରି ରଖିଲା । ବହୁତ କଥା ତାର ଅବୁଝା ରହିଗଲା । ମାତ୍ର ଏତିକି ଅନୁମାନ କଲା, ପିତା ତାର ତା'ଠାରୁ କିଛି ଶୁଣିବାକୁ ଇଚ୍ଛାକରି, ନଶୁଣି ଚାଲିଗଲେ ମଶାଣି ଭୂଇଁକୁ ।

ମଶାଣି ପଡ଼ିଆରେ ସାହିଭାଇଙ୍କ କଥାରେ ସେ ତାର ଶୋଇଥିବା ବାପା ଦେହରେ ନିଆଁ ହୁଳା ଧରାଇଲା—ଗୁହୁଁ ଗୁହୁଁ ଅଗ୍ନିଶିଖା ଆକାଶ ଛୁଇଁଲା—ମାତ୍ର କେଇ ମିନିଟ୍ ମଧ୍ୟରେ ତାର ଅତିପ୍ରିୟ ଲୋକକୁ ପୋଡ଼ି ପାଉଁଶ ହେବାର ଦେଖି, ଫେରିଲା ସାହିଭାଇଙ୍କ ସଂଗେ ଘରକୁ । ଫେରିବା ବାଟରେ ରହି ରହି ତାର ମନେ ପଡ଼ୁଥିଲା ତାର ବାପାଙ୍କ କେଇପଦ କଥା । 'କଥା ଦେ ପୁଅ । ମୋ କଥା ରଖିବୁ ତ...... ?' ବାପାଙ୍କର ଶେଷ ଇଚ୍ଛା କ'ଣ ନ ବୁଝିଥିଲେ ମଧ୍ୟ ସତ୍ୟବ୍ରତ ପ୍ରତିଜ୍ଞା କଲା—ନିଶ୍ଚୟ ପୂରଣ କରିବ ।

ବାପାଙ୍କର ଦଶାକର୍ମ ଶେଷହେଲା । ଟାଁଭାଇ ତାର ଦାଣ୍ଡରେ ଠୁଣ୍ଡହୋଇ ସନ୍ତୁଷ୍ଟ ମନରେ ଫେରିଲେ ।

ରାସ୍ତାକଡ଼ ବଜାରରେ ଏକ କୋଣରେ ତା ବାପାଙ୍କର ଦୋକାନଟିରେ ତାଲା ପଡ଼ିଥିଲା । ସତ୍ୟବ୍ରତ ମନକୁ ଟାଣକରି ଖୋଲିଲା ଦୋକାନ । ପିଲାଟି-ବେଳୁ ବାପାଙ୍କ ସଂଗେ ସେ ଆସିଛି ଏଇ ଦୋକାନକୁ । ବାପାଙ୍କୁ ସାଇକେଲ ମରାମତି କରୁଥିବାର ସେ ଦେଖିଛି । କେବଳ ଦେଖିନି, ବରଂ ବେଳେ ବେଳେ ଚକାରେ ପମ୍ପ ମାରିଛି । ଲିକ୍ ସଜାଡ଼ିଛି । ଆଉ ଛୋଟ ଛୋଟ ମରାମତିରେ ସାହାଯ୍ୟ କରିଛି ବାପାଙ୍କୁ । ଏବେ କିନ୍ତୁ ତାକୁ ସବୁ କରିବାକୁ ପଡ଼ିବ । ତାର ଟିକି ହାତର ରୋଜଗାରରେ ଛୋଟିଆ ସଂସାରଟିକୁ ସମ୍ଭାଳି-ବାକୁ ପଡ଼ିବ । ଅନେକ ଛିଣ୍ଡା ଅଛିଣ୍ଡା ପ୍ରଶ୍ନମାନ ତା ମନରେ ଉଭାହୋଇ ହୁରେଇ ଗଲା । ତାର ପଛକଥା ଗୋଟି ଗୋଟି ମନେପଡ଼ି ଯାଉଥିଲା—

ପ୍ରତିଦିନ ସେ ବାପାଙ୍କ ସଂଗେ ଆସେ ବଜାରକୁ । ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଲେ ସେ ଘରକୁ ଏକୁଟିଆ ଫେରେ । ଗଡ଼େ ଖାଇ, କଂସାରେ ବାପାଙ୍କ ପାଇଁ ଭାତ ଧରି ଆସେ । ସଂଧ୍ୟା ଗଡ଼ିଲେ ଦୁହେଁ ବଜାର ସଉଦା ସାରି ଫେରନ୍ତି ଘରକୁ । ଦୁଃଖେ ସୁଖେ କାଟୁଥିଲି ଦିନ । ହଠାତ୍ ଏଇ ବୋଝଟା ତା ମୁଣ୍ଡରେ ପଡ଼ିଯିବ ବେ.ଳ କ'ଣ ସେ ଭାବିଥିଲା ! ! ମନକୁ ଟାଣ କରି ସେ ହାତରେ ଧରିଲା ରେଞ୍ଚ । ଚକାରେ ମାରିଲା ପମ୍ପ୍ । ସ୍କ୍ରୁଟ ସ୍କ୍ରୁଟ ମରାମତିରେ ହାତ ଦେଲା । ତାର ଆଗ୍ରହ ଦେଖି ପାଖ ଦୋକାନୀ ତାକୁ ସାହାଯ୍ୟ କଲେ । ମନ ଥିଲେ ଉପାୟ ଆପେ ଆପେ ଆସେ । କିଛି ଦିନ ମନ ଦେଇ କାମ କରିବାରୁ ଅନେକ କଥା ଶିଖିଗଲା ।

ଠିକ ହାତର ରୋଜଗାରତକ ଧରାଏ ମା'ହାତରେ । ଧୀରେ ଧୀରେ ପରିବାରର ସମସ୍ତେ ପିତାଙ୍କ ବିୟୋଗ ଦୁଃଖ ଭୁଲିଗଲେ ।

ଏଥିମଧ୍ୟରେ ଗୋଟିଏ ବର୍ଷ କଟିଗଲା । ପିତାଙ୍କର ଆତ୍ମାକୁ ଶାନ୍ତ କରିବାକୁ ପଡ଼ିବ, ଏକଥା ବହୁବାର ବୋଉଠାରୁ କଥାଛଳରେ ଶୁଣିଛି ସେ । ଯାହାହେଉ, ଅଳ୍ପବହୁତ ସାହିଭାଇଙ୍କୁ ସନ୍ତୁଷ୍ଟ କରାଇ ତାଙ୍କଠାରୁ ଆଶୀର୍ବାଦ ନେଲା ।

ବାପାଙ୍କର ଶେଷ ‌କେଇ ପଦକୁ ମନରେ ବାନ୍ଧିରଖି ସେ ବ୍ୟବସାୟରେ ମନ ଦେଲା । ଧୀରେ ଧୀରେ ସମୟର ଗତି ସହିତ ପାଦ ପକାଇ ଆଗେଇଲା ସେ । ତାର ଧୈର୍ଯ୍ୟ ଓ କାମ କରିବାର ନିଷ୍ଠା ତାକୁ ଖୁବ୍ କମ୍ ଦିନରେ ପରିବାର ଖର୍ଚ୍ଚ ଚଳାଇ କିଛି କିଛି ସଞ୍ଚିବାରେ ସାହାଯ୍ୟ କଲା । ଗୃହୁଁ ଗୃହୁଁ ସମୟର ପାଣି ବୋହିଗଲା । ବହୁ ଘଟଣା ଘଟିଗଲା ଦୁନିଆ ଗୃହରେ । ଅନେକ ପରିବର୍ତ୍ତନ ଆସିଗଲା ଗୃହୁଁ ଗୃହୁଁ । ପରିବର୍ତ୍ତନଶୀଳ ସମୟ ସହିତ ସେ ନିଜକୁ ମିଶାଇଦେଲା । ପ୍ରତିଦିନ ବେଳାବେଳି ରିକ୍ସା ନେଇ ସେ ବାହାରିଯାଉଛି ପାଖ ବଜାରକୁ । ସେଠାରୁ କଟକ ଭୁବନେଶ୍ୱର ଯାତ୍ରୀଙ୍କୁ ନେଇ ମହିଧରପଡ଼ା ଛକ ଓ ନଖରାରେ ଗୁଡ଼ଆସୁଛି । ପିଲାଟିର ଦୁଃସାହସ ଦେଖି ଓ ତାର ସରଳ ବ୍ୟବହାରରେ ସନ୍ତୁଷ୍ଟ ହୋଇ ଯାତ୍ରୀ ଦିପଇସା ମନ ଖୋଲି ଦେଉଛନ୍ତି । ମନରେ ତାର ଟିକେ ଦୁଃଖ ନାହିଁ । ଶତସିଂହର ବଳ ତାର ମନରେ ଠୁଳ । ଆଶା ତାର ହିମାଳୟ ପରି ଉଚ, ଅଚଳ, ଅଟଳ·.....''

ସକାଳ ଓଳି ରିକ୍ସାଟଣା, ଉପରଓଳି ସନ୍ଧିଘଡ଼ିକ ଯାଏ ସାଇକେ
ଦୋକାନରେ ମରାମତି କାମ—ଏଇ ହେଲା ତାର ନିତିଦିନ ରୁଟିନବନ୍ଧା
କାମ । ଅକ୍ଳାନ୍ତ ପରିଶ୍ରମ କରି ମୁଣ୍ଡ ଖେଳାଇ ଦୁଇପଇସା ସଂଚି ଗୋଟାଏ
ରିକ୍ସାରୁ ତିନୋଟି ରିକ୍ସା କିଣି ଭଡ଼ା ଲଗାଇଛି ସେ ।




ଏଥିମଧ୍ୟରେ ବିତିଯାଇଛି ଦଶ ବର୍ଷ । ସତ୍ୟ ବଡ଼ ହୋଇଛି
ବଢିଯାଇଛି ତାର ରୋଜଗାର ପନ୍ଥା । ପରିବର୍ତ୍ତନଶୀଳ ଦୁନିଆର ଗୁଳାରେ
ସେ ନିଜକୁ ପକାଇ ନେଇଛି । ଘରେ ବିଧବା ମା, ସାନଭଉଣୀ ଧା
ଉଷେଇଁ ଗୁଉଳ କରିବାରେ ମନଦେଇଛନ୍ତି । ସ୍କୁଲପାଠ ପଢ଼ା ସାଙ୍ଗେ
କାଂଚନ ମାକୁ ଏସବୁ କାମରେ ସାହାଯ୍ୟ କରୁଛି । ଧାନ ବେପାରରେ
ଦେଇଛି ସତ୍ୟ । ସାଇକେଲ୍ ଦୋକାନଟି ତାର ବଢ଼ିଯାଇଛି । ଜଣେ
ମିସ୍ତ୍ରୀ ବି ରଖିଛି ।

ପାଖ ଦୁଇଟି ବଡ଼ ସହରକୁ ସେ ସାଇକେଲରେ ଭଡ଼ନେଉଛି ନାନାଦ୍ଧ ଜିନିଷ । ସଜନାଶାଗରୁ ମାଛପର୍ଯ୍ୟନ୍ତ ସବୁ ନେଇ କଟକ ଭୁବନେଶ୍ୱର ବଜାରରେ ଦେଇ ଆସୁଛି । କେତେବର୍ଷ ତଳର ରିକ୍ସାଟଣା ପିଲା ଆଜି ସତ୍ୟବାବୁ ରୂପେ ସମସ୍ତଙ୍କଠାରେ ପରିଚିତ । ଧନ ସାଙ୍ଗକୁ ମନ ମଧ୍ୟ ଦେଇଛନ୍ତି ଭଗବାନ ତାକୁ । ସବୁ କଥାରେ ସେ ଆଗୁଆ । ସମସ୍ତଙ୍କୁ ସେ ସାହାଯ୍ୟ କରୁଛି । ପ୍ରତ୍ୟେକ ଅନୁଷ୍ଠାନ ସହିତ ତାର ସମ୍ପର୍କ । କାଲିର ବାଳୁତ ସତ୍ୟବ୍ରତ ଆଜିର ସତ୍ୟବାବୁଙ୍କ ମଧ୍ୟରେ ଅନେକ ତଫାତ୍ । ଜୀବନର ରହସ୍ୟ ବିଷୟରେ ପଚାରିଲେ ସେ କୁହନ୍ତି—ପ୍ରଭୁଙ୍କ ଇଚ୍ଛା ଯାହା ତା ଘଟୁଛି । ତେବେ ମଣିଷ ନିଷ୍ଠାର ସହିତ ନିଜର କର୍ତ୍ତବ୍ୟ କରିଯିବା ଉଚିତ । ନିଶ୍ଚୟ ସୁଫଳ ମିଳିବ ।

ବାପାଙ୍କର ଶେଷ କଥାକୁ ମନରେ ଦେଇ ସତ୍ୟବ୍ରତ ସବୁ କାର୍ଯ୍ୟ କରିଚାଲିଛି । ସାନଭାଇ ମାଟ୍ରିକ ପାଶ ପରେ କଲେଜରେ ପଢ଼ୁଛି । ସାନ-ଭଉଣୀ ଏକ ଧନୀ ଘରେ ବିବାହ କରିସାରିଲାଣି ।

ତାର ମୁଣ୍ଡରେ ଲଦା ହୋଇଥିବା ବୋଝ ହାଲୁକା ଧରି ଆସିଲାଣି । ତାର ବାପାମଲା ବେଳର ସତ୍ୟକୁ ପାଳନ କରି ସେ ପ୍ରକୃତରେ ସତ୍ୟବ୍ରତ ପାଲଟିଯାଇଛି ।

---